ଗ୍ରନ୍ଥମାଳା ଷଷ୍ଠ




# ବ୍ରହ୍ମଶଙ୍କୁଳି

ଓ

# ଅଣାକାର ସଂହିତା

ଏବଂ

## ମହାପୁରୁଷ ଅଚ୍ୟୁତାନନ୍ଦଙ୍କ ଚରିତ

ଅଚ୍ୟୁତାନନ୍ଦ

ପ୍ରାଚୀ ଗ୍ରନ୍ଥମାଳା । ଷଷ୍ଠ

# ବ୍ରହ୍ମଶାଙ୍କୁଳି ଓ ଅଣାକାର ସଂହିତା

ଏବଂ

(ମହାପୁରୁଷ ଅଚ୍ୟୁତାନନ୍ଦଙ୍କ ଚରିତ)



ଅଚ୍ୟୁତାନନ୍ଦ ।

ମହାପୁରୁଷ ଅଚ୍ୟୁତାନନ୍ଦ ଗୋସ୍ୱାମିକୃତ

# ବ୍ରହ୍ମଶାଙ୍କୁଳି ଓ

# ଅଣାକାର ସଂହିତା

ଓ ମୁଖବନ୍ଧରେ

ମହାପୁରୁଷଙ୍କ ସୁବିସ୍ତୃତ ଚରିତ ।



ରେଭେନ୍ସା କଲେଜର ଅଧ୍ୟାପକ

ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି ଏମ୍. ଏ,ଙ୍କ ଦ୍ୱାରା

ସୁବିସ୍ତୃତ ଟୀକାସହ ସଙ୍କଳିତ

ଓ ପ୍ରକାଶିତ ।

ପ୍ରଥମ ମୁଦ୍ରଣ ।

Printed at the Mukur Press,
by B. S. Das,
CUTTACK.

1926.

ମୂଲ୍ୟ ଟ ୦ ୮ ଆଠ ଅଣା ।

# ମୁଖବନ୍ଧ ।



## ମହାପୁରୁଷ ଶ୍ରୀ ଅଚ୍ୟୁତାନନ୍ଦ ଗୋସ୍ୱାମୀ ।

ଭକ୍ତର ହୃଦୟରେ ଦୁଃଖ ନିବାରଣ ପାପର ଉଚ୍ଛେଦସାଧନ ଓ ସାଧୁଙ୍କ ପରିତ୍ରାଣ ଛଳରେ ଭଗବାନ ହରି ସ୍ୱଲୀଳା ଆସ୍ୱାଦନ ନିମିତ୍ତ ଶୁଦ୍ଧଚୈତନ୍ୟ ପ୍ରେମମୂର୍ତ୍ତି ଶ୍ରୀକୃଷ୍ଣଚୈତନ୍ୟରୂପ ମାନବ-ବିଗ୍ରହ ପରିଗ୍ରହପୂର୍ବକ ଧରାଧାମରେ ଅବତୀର୍ଣ୍ଣ ହେଲେ । ପ୍ରଭୁ ଚୈତନ୍ୟଚନ୍ଦ୍ରଙ୍କ ପ୍ରୀତିମୟୀ ମୂର୍ତ୍ତିରେ ରାଧାକୃଷ୍ଣ ଯୁଗଳ ମୂର୍ତ୍ତିଙ୍କର ଅପୂର୍ବ ମଧୁର ମିଳନ ପ୍ରକଟିତ । ସ୍ୱଲୀଳାଆସ୍ୱାଦନକ୍ରିୟାରେ ସ୍ୱୀୟ ପରିକରବର୍ଗଙ୍କର ଉପସ୍ଥିତି ଅପରିତ୍ୟାଜ୍ୟ । ସେହି ପରିକରବର୍ଗ ମଧ୍ୟ ଧରାଧାମରେ ଅବତୀର୍ଣ୍ଣ ହୋଇଥିଲେ ।

"ତୁମ୍ଭ ପଞ୍ଚସଖାଙ୍କ ମୋ ଜନ୍ମେ ଜନ୍ମ ଆଶ ।
ତୁମ୍ଭପାଇଁ ଅବତାର ଲୀଳା ଅଭିଳାଷ ।"

ଶୂନ୍ୟସଂହିତା ୧୦ମ ଅଧ୍ୟାୟ ।

ପୁଣ୍ୟଭୂମି ଉତ୍କଳଖଣ୍ଡରେ ଯେ ମଧୁର ପ୍ରେମଲୀଳାର ଉଲ୍ଲୋଳ କଲ୍ଲୋଳ ପ୍ରବାହିତ ହୋଇଥିଲା ତାହାର ପ୍ରଧାନ କାରଣ ଶ୍ରୀ ଚୈତନ୍ୟଚନ୍ଦ୍ର ଓ ତାହାଙ୍କର ପରିକରବର୍ଗ । ସେହି ପରିକରବର୍ଗ ; ଦୁଇଶ୍ରେଣୀରେ ବିଭକ୍ତ ଯଥା---ଅନ୍ତରଙ୍ଗ ଓ ବହିରଙ୍ଗ । ପଞ୍ଚସଖା ତଥା ପଞ୍ଚଶଖା=ବଳରାମ, ଜଗନ୍ନାଥ, ଯଶୋବନ୍ତ, ଅନନ୍ତ ଓ ଅଚ୍ୟୁତଙ୍କ ମତରେ ସେମାନେ ପ୍ରଭୁଙ୍କର ଅନ୍ତରଙ୍ଗ ସଖା ।

"ତୁମ୍ଭେ ମୋର ପଞ୍ଚଆତ୍ମା ଅଟ ପଞ୍ଚଜଣ ।
ଅବତାରଶ୍ରେଣୀ ଯେତେ ତୁମ୍ଭପାଇଁ ପୂର୍ଣ୍ଣ ।

ଯାଅ ଅଚ୍ୟୁତ ଅନନ୍ତ ଯଶୋବନ୍ତ ଦାସ ।
ବଳରାମ ଜଗନ୍ନାଥ କର ଯା ପ୍ରକାଶ ॥

୧୧ଶ ଅଧ୍ୟାୟ ଶୂ, ସଂ;

ପୁନଶ୍ଚ—

ଆମ୍ଭର ଆତ୍ମା ତୁମ୍ଭେ ପାଞ୍ଚଜଣ ।
ତେଣୁ ତୁମ୍ଭ ଆଗେ କହିଲୁ ପୁଣ ॥
ଆମ୍ଭେ ପାଞ୍ଚଶାଖା ରହି ନିଶ୍ଚଳେ ।
ଧ୍ୟାଇଲୁ ତାଙ୍କ ଚରଣ କମଳେ ॥

୧୪ ଅଧ୍ୟାୟ ଶୂନ୍ୟସଂହିତା ।

ଅବତାର ଶ୍ରେଣୀକଅନୁସର । ଜନ୍ମ ଲଭବେ ପୁଣି ଶ୍ରୀହର ॥
ଅଚ୍ୟୁତ ଅନନ୍ତ ଯେ ଯଶୋବନ୍ତ । ବଳରାମ ପୁଣି ଯେ ଜଗନ୍ନାଥ ॥
କଳିଯୁଗେ ଲୀଳା ପ୍ରକାଶ କର । ତୁମ୍ଭ ଆଜ୍ଞାକୁ ଥିବେ ଶିରେ ଧର ॥

୧୭ ଅଧ୍ୟାୟ ଶୂନ୍ୟସଂହିତା ।

ଅନନ୍ତ ଯଶୋବନ୍ତାଦି ମଧ୍ୟ ଏହି ରୂପ ଉକ୍ତ କରଅଛନ୍ତି ।

ଏବମ୍ଭୂତ ଯେଉଁ ପ୍ରଭୁ ତାଙ୍କ ପଞ୍ଚଭୂତ ।
ଏକ ଭୂତ ସଖା ଯେ ଅଟଇ ଯଶୋବନ୍ତ ।

ସ୍ୱରୋଦୟ-ଯଶୋବନ୍ତ ଦାସ ଇତ୍ୟାଦି ୨ ! —

ଏହି ପଞ୍ଚ ମହାପୁରୁଷଙ୍କ ନାମୋଲ୍ଲେଖ ପର୍ଯ୍ୟନ୍ତ ବଙ୍ଗୀୟ ବୈଷ୍ଣବ ବୃନ୍ଦାବନ ଦାସ, ଲୋଚନ ଦାସ ଓ କୃଷ୍ଣଦାସ କବିରାଜ କୃତ ଯଥାକ୍ରମେ ଚୈତନ୍ୟଭାଗବତ, ଚୈତନ୍ୟମଙ୍ଗଳ ଚୈତନ୍ୟ ...ତାମୃତରେ ନାହିଁ । ବଙ୍ଗୀୟବୈଷ୍ଣବ ଦେବକୀନନ୍ଦନ ଦାସ ...ବୈଷ୍ଣବ ବନ୍ଦନାରେ ଜଗନ୍ନାଥ ଓ ବଳରାମଙ୍କୁ ଭକ୍ତ- ...ଚଆସନ ପ୍ରଦାନ କରି ଅଛନ୍ତି ।

"ବଡ ଭଡ଼ସ୍ନ୍ୟା ବଳରାମ ଦାସ ମହାଶୟ,
ଜଗନ୍ନାଥ ବଳରାମ ଯାର ବଶ ହୟ ।
ଜଗନାଥ ଦାସ ବଡ ସଙ୍ଗୀତ ପଣ୍ଡିତ,
ଯାର ଗାନ-ରସେ ଜଗନ୍ନାଥ ବିମୋହିତ ।"

ସେ ଅନନ୍ତ ଅଚ୍ୟୁତ ଓ ଯଶୋବନ୍ତଙ୍କ ନାମୋଲ୍ଲେଖ କରିନାହାନ୍ତି ।

ଏହି ପଞ୍ଚଶାଖା ବା ପଞ୍ଚସଖା ଯନ୍ତ୍ର, ତନ୍ତ୍ର, ମନ୍ତ୍ରରେ ପ୍ରବୀଣ ଥିଲେ— ଯୋଗ, ଭୋଗ, ଲୟ, ଲୀଳାରେ ବିଳାସୀ ଥିଲେ । ଲୀଳା ଅଙ୍ଗରେ ସେମାନେ ଚୈତନ୍ୟଙ୍କର ପରିକର । ଅନ୍ୟଥା ସେମାନେ ଚୈତନ୍ୟଙ୍କ ଧର୍ମ୍ମ ପଦ୍ଧତି ବା ମାର୍ଗର ପଥିକ ନ ଥିଲେ ବୋଲି ବୋଧହୁଏ ଚୈତନ୍ୟଲୀଳା ଲେଖକ ବଙ୍ଗୀୟବୈଷ୍ଣବ ବୃନ୍ଦାବନ ଦାସ, ଲୋଚନ ଦାସ ଓ କୃଷ୍ଣ ଦାସ କବିରାଜ ସେହି ପଞ୍ଚଶାଖାଙ୍କୁ ଚୈତନ୍ୟ ଚନ୍ଦ୍ରଙ୍କର ଲୀଳାର ପରିକରରୂପେ ଗ୍ରହଣ କରି ନାହାନ୍ତି । ସେହି ଯୁଗରେ ଉତ୍କଳରେ ବୌଦ୍ଧଧର୍ମର ପ୍ରଭାବ ନ୍ୟୂନାଧିକ ରୂପରେ ପରିଦର୍ଶିତ ହୁଏ । ଏହି ପଞ୍ଚଶାଖାଙ୍କ ଗ୍ରନ୍ଥରେ ମଧ୍ୟ ସ୍ଥାନେ ସ୍ଥାନେ ଆମ୍ଭେମାନେ ବୌଦ୍ଧମତର ପ୍ରଭାବ ଦେଖିବାକୁ ପାଉ ।

ବିଚାରକରି ଦେଖିଲେ ବୌଦ୍ଧଧର୍ମ ହିନ୍ଦୁଧର୍ମର ସନ୍ତାନ । ଉଭୟେ ଉଭୟଦ୍ୱାରା ପ୍ରଭାବିତ ହୋଇଅଛନ୍ତି । ସେ ବିଷୟର ସବିସ୍ତର ବିଚାରର ଏସ୍ଥଳ ନୁହେ । ତହୁଁ ରିଜ୍‌ଡେଭିଡ୍‌ସଙ୍କ ମତ ପ୍ରଜ୍ଞାପନ କରି ଉକ୍ତ ବିଚାରରୁ କ୍ଷାନ୍ତ ହେଲୁ । ରିଜ୍‌ଡେଭିଡ୍‌ସ (Rhys Davids) ତାଙ୍କର ବୌଦ୍ଧଧର୍ମ ବିଷୟ ଗ୍ରନ୍ଥରେ ଲେଖିଅଛନ୍ତି ।

"Budhism was the child—the product of Hinduism. Gautama's whole atrining

was Brahmanism; he probably deemed himself to be the most correct exponent of the spirit from the letter of ancient faith; and it can only be claimed for him that he was the greatest and wisest and best of the Hindus (Budhism P. 85)

ଡାକ୍ତର ଓଲ୍ଡ଼ନ୍‌ବର୍ଗ ତାଙ୍କର 'ବୁଦ୍ଧ' ନାମକ ଗ୍ରନ୍ଥର ୧୮ ପୃଷ୍ଠାରେ କହିଅଛନ୍ତି ଯେ "We now proceed to trace step by step the process of that self-destruction of the Vedic religious thought which has produced Budhism as its positive outcome"

ବୌଦ୍ଧ ଧର୍ମର ଉତ୍କୃଷ୍ଟ ଅଂଶ ଅର୍ଥାତ୍ ଉପାଦେୟ ବିଷୟ ବୈଷ୍ଣବ ଧର୍ମର ଉପଯୋଗୀ । ଏଥିରେ ଦ୍ୱିଧାମତ ହୋଇ ନ ପାରେ ।

ଏହି ପଞ୍ଚ ଶାଖାଙ୍କର ନସ୍କାର ଭଜନ, ଯନ୍ତ୍ର, ତନ୍ତ୍ର, ମନ୍ତ୍ର, ତଥା ଯୋଗ ଜ୍ଞାନରେ ଉତ୍କଳର ସ୍ମାର୍ତ୍ତ ବ୍ରାହ୍ମଣମଣ୍ଡଳୀ ଅତ୍ୟନ୍ତ ଉତ୍ତ୍ୟକ୍ତ ହୋଇପଡ଼ିଥିଲେ । ତାନ୍ତ୍ରିକ ବ୍ରହ୍ମଣମାନଙ୍କର ପ୍ରଭାବର ସମ୍ମୁଖୀନ ହେବାକୁ ଚୈତନ୍ୟଚନ୍ଦ୍ରଙ୍କୁ ମଧ୍ୟ ହୋଇଥିଲା । ସେହି ପ୍ରଭାବ ଚୈତନ୍ୟଚନ୍ଦ୍ରଙ୍କ ସମ୍ମୁଖରେ ପରାହତ ହୋଇଥିଲା । ଏହିସବୁ କାରଣରୁ ସେହି ପଞ୍ଚଶାଖାଙ୍କୁ ବହୁ କଷ୍ଟସ୍ୱୀକାର କରିବାକୁ ପଡ଼ିଥିଲା । ବହୁ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାକୁ ହୋଇଥିଲା ଓ ବହୁ ସତର୍କତା ସହିତ ନିଜର ଧର୍ମ ପ୍ରଚାର କରିବାକୁ ମଧ୍ୟ ହୋଇଥିଲା । ସେ ଯାହାହେଉ ଆମ୍ଭେମାନେ ଶୂନ୍ୟସଂହିତାରେ ଦେଖିବାକୁ ପାଉ ଯେ ଏହି ପଞ୍ଚଶାଖା ଚୈତନ୍ୟଚନ୍ଦ୍ରଙ୍କ ସହ ନାମ କୀର୍ତ୍ତନରେ ନୃତ୍ୟ କରୁଥିଲେ ।

"ବୈଷ୍ଣବ ମଣ୍ଡଳୀ ଖୋଳ କରତାଳ ବଜାଇ ବୋଲନ୍ତି ହରି ।
ଚୈତନ୍ୟଠାକୁର ମଧ୍ୟେ ନୃତ୍ୟକାର ଦଣ୍ଡ-କମଣ୍ଡଳୁ-ଧାରୀ ।...
ଅନନ୍ତ ଅଚ୍ୟୁତ ଯେବେ ଯଶୋବନ୍ତ ବଳରାମ ଜଗନ୍ନାଥ ।
ଏ ପଞ୍ଚସଖାଙ୍କ ନୃତ୍ୟ କରିଗଲେ ଗୌରାଙ୍ଗଚନ୍ଦ୍ର ସଙ୍ଗତ ।

ଶୂନ୍ୟ ସଂହିତା ୧ମ ଅଧ୍ୟାୟ ।

ଅଚ୍ୟୁତାନନ୍ଦ ତାଙ୍କର ଗୁରୁଭକ୍ତିଗୀତାର ୨ୟ ଖଣ୍ଡ ୯ମ ପଟଳରେ ତାଙ୍କର ଶିଷ୍ୟମାନଙ୍କୁ କହୁଅଛନ୍ତି ।

"କଳିଯୁଗେ ଶ୍ରୀଚୈତନ୍ୟ ଖୋଳ ନୃତ୍ୟ କରି,
ଶ୍ରୀଚୈତନ୍ୟ ଲୀଳା କରି ପାଦେ ପାଦେ ଫେରି ।
ଚୈତନ୍ୟ କରୁଣା, ଯେ ତୁମ୍ଭଙ୍କୁ ଛନ୍ତି କରି,
ବାରଗୋପ ସହାସରେ ଅଛ ତୁମ୍ଭେ ସରି ।"

ଜଗନ୍ନାଥ ଦାସ ଉତ୍କଳରେ ସର୍ବତ୍ର ପରିଚିତ । ବଳରାମ ଦାସ ଓ ଅଚ୍ୟୁତାନନ୍ଦ ଦାସ ନ୍ୟୁନାଧିକ ଭାବରେ ପ୍ରାୟ ସମସ୍ତଙ୍କୁ ବିଦିତ । ଅନନ୍ତ ଓ ଯଶୋବନ୍ତ ସ୍ଥାନେ ସ୍ଥାନେ ମଧ୍ୟ ପରିଚିତ ଅଛନ୍ତି ।

ଜଗନ୍ନାଥ ଦାସଙ୍କର ପୁରୀ ଓଡ଼ିଆ ମଠ । ବଳରାମଙ୍କର ମଠ ବିଷୟ ଆମ୍ଭମାନଙ୍କୁ ଅବିଦିତ । ସେ ସମଙ୍ଗ ବା ସମଗ୍ରା ପାଟରେ ସମାଧିସ୍ଥ ହୋଇଥିଲେ ।

ଅଚ୍ୟୁତାନନ୍ଦଙ୍କର ଲୀଳାସ୍ଥାନ:—

୧--ଗୋପାଳ ମଠ, ପୁରୀ ବାଙ୍କି ମୁହାଣୀ (କୁଣ୍ଡେଇ ବେଣ୍ଟ ସାହି)
୨—ବଡ଼ମୂଳ ଖାଇଲୋ ପ୍ରଗନା (କଟକ ଜିଲ୍ଲା)
୩—କୁଣ୍ଡବଳଦା ସାଇବିର ପ୍ରଗନା (କଟକ ଜିଲ୍ଲା)
୪—ଧାନକୁଦ ଖା; ହାଜିପୁର ପ୍ର; ହରିହର ପୁର (କଟକ ଜିଲ୍ଲା)
୫—ନେମାଳ (କଟକ ଜିଲ୍ଲା)

ମଟେଶ୍ୱରଙ୍କ ଦାସଙ୍କର ଲୀଳାସ୍ଥାନ;—ଅନ୍ତର୍ଗ ଜଗତସିଂହ ପୁର ନିକଟ (କଟକ ଜିଲ୍ଲା)

ଶିଶୁ ଅନନ୍ତଙ୍କ ଲୀଳାସ୍ଥାନ;— ବାଲିପାଟଣା ପ୍ର: କୋଠଦେଶ (ପୁରୀଜିଲ୍ଲା)

ଏମାନଙ୍କ ମଧ୍ୟରେ ଜଗନ୍ନାଥ ଦାସ ଅତିବଡ଼ି ସମ୍ପ୍ରଦାୟର ପ୍ରବର୍ତ୍ତକ ଓ ଅଚ୍ୟୁତାନନ୍ଦ ଉତ୍କଳର ଗୋପାଳ କୁଳର ସାକ୍ଷାଦ୍‌ଗୁରୁ ।

ଅଚ୍ୟୁତାନନ୍ଦଙ୍କ ଜନ୍ମ—ସ୍ୱର୍ଗୀୟ ସାହିତ୍ୟପ୍ରାଣ ମୃତ୍ୟୁଞ୍ଜୟ ରଥ ଅଚ୍ୟୁତାନନ୍ଦଙ୍କ ପିତା ଦୀନବନ୍ଧୁ ଖୁଣ୍ଟିଆଙ୍କୁ ବର୍ଣ୍ଣରେ ଗୋପାଳ ଥିଲେ ବୋଲି କହିଅଛନ୍ତି । ଦୁଃଖର କଥା ଏହି ଉକ୍ତି ତାଙ୍କର ସମୀଚୀନ ନୁହେଁ । କାରଣ ଯେଉଁ **ତିଲକଣା ଗ୍ରାମରେ** ଅଚ୍ୟୁତାନନ୍ଦ ଜନ୍ମଗ୍ରହଣ କରିଅଛନ୍ତି ବୋଲି ସେ ତାଙ୍କର ଶୂନ୍ୟ-ସଂହିତାରେ କହିଅଛନ୍ତି ସେହି ଗ୍ରାମ ତାଙ୍କ ପିତାଙ୍କର ଅଧିବାସ ଥିଲା । ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ସେହିସ୍ଥାନ ନେମାଳର ଅଚ୍ୟୁତାନନ୍ଦ ଦାସଙ୍କ ବଂଶଧରଙ୍କ ଗୃହ ଓ ଅଚ୍ୟୁତା-ନନ୍ଦଙ୍କ ଗାଦିର ପ୍ରାୟ ଏକମାଇଲ ଦୂରରେ ଅବସ୍ଥିତ । ସେହି ଗ୍ରାମରେ ଆଜିସୁଦ୍ଧା ଖୁଣ୍ଟିଆ ନାମଧାରୀ ଖଣ୍ଡାୟତ ଜାତିର ଲୋକେ ବାସ କରୁଅଛନ୍ତି । ତେଣୁ ଅଚ୍ୟୁତାନନ୍ଦଙ୍କ ପିତା ଦୀନବନ୍ଧୁ ଖୁଣ୍ଟିଆ ବର୍ଣ୍ଣରେ ଖଣ୍ଡାୟତ ଥିଲେ । ଦୀନବନ୍ଧୁଙ୍କ ଆର୍ଥିକ ଅବସ୍ଥା ମନ୍ଦ ଥିଲା । ସେ ଓ ତାଙ୍କର ପତ୍ନୀ ପଦ୍ମାବତୀ ପୁତ୍ରଅଭାବ-ଜନିତ ଦୁଃଖରେ ବହୁକାଳ ଅତିବାହିତ କରିଥିଲେ । ରଥେ ଲେଖି-ଅଛନ୍ତି ଯେ, ଦୀନବନ୍ଧୁ ସ୍ୱପତ୍ନୀ ସହିତ ପ୍ରଭୁ ଜଗନ୍ନାଥଙ୍କ ଉପାସନା ନିମିତ୍ତ ଶ୍ରୀକ୍ଷେତ୍ରକୁ ଯାତ୍ରା କରିଥିଲେ । ପତ୍ନୀଙ୍କ ସହିତ ପୁରୀଧାମକୁ ଯାତ୍ରା କରିବାର କୌଣସି ପ୍ରମାଣ ଆମ୍ଭେମାନେ ତାଙ୍କର ଗ୍ରନ୍ଥମାନଙ୍କରୁ, କିମ୍ବଦନ୍ତୀରୁ କିମ୍ବା ତାଙ୍କର ବଂଶଧର

ମାନଙ୍କଠାରୁ ପାଇନାହୁଁ । ଅତଏବ ସେ ଉକ୍ତିକୁ ଆମ୍ଭେମାନେ ଯଥାର୍ଥରୂପେ ଗ୍ରହଣ କରି ନ ପାରୁ ।

(ଟଳକଣାରେ ମୁଁ ଜନମ ଲଭିଲି କେହି ନ ଚିହ୍ନିଲେ ମୋରେ ।
ଅଗଣିତ ବୋଲି ମାତା ଡାକୁଥାନ୍ତି ଅନ୍ନ ନ ମିଳଇ ଘରେ ॥)

ଦୀନବନ୍ଧୁ ଶ୍ରୀକ୍ଷେତ୍ରରେ କିଛିକାଳ ଅବସ୍ଥାନ କଲାପରେ ଜଗନ୍ନାଥ ପ୍ରସନ୍ନ ହୋଇ ତାହାଙ୍କୁ ସ୍ୱପ୍ନରେ ଆଦେଶ ଦେଲେ ।

ଲଭିବୁ ବାଳକ କିଛି ସେ ବାଳକ ମନର କଳ୍ପନା ପାଅ ।
କାଲି ପ୍ରଭାତରେ ପାହାଡ଼ ଧୂପରେ ଗରୁଡ଼ ପଛକୁ ଚାହିଁ ॥

ହୋଇବ ଯେ ସୁତ ତୋତେ ସେ ପ୍ରାପତ ମୋତେ ଏ ଆଜ୍ଞା ହୋଇଲା
ସ୍ୱପନକୁ ଚେତି ସେହି ଅଙ୍ଗ ପିତ ଖୁଣ୍ଟିଆ ବେଗେ ଧାଇଁଲା ।

× × × × × ×

ଦିବ୍ୟ କଳେବର ହୋଇଣ କୁମର ପ୍ରଭୁଙ୍କ ଆଗେ ଖେଳୁଛି ।

× × × × × ×

ଦେଖନ୍ତେ ବାଳକ ହୋଇଗଲା ଗୋପ୍ୟ ଆଜ୍ଞା ହୋଇଥିଲା ଯାହା ।

ଏହାପରେ ଦୀନବନ୍ଧୁ ଗୃହକୁ ଫେରି ଆସିଥିଲେ ଏବଂ ଉକ୍ତ ଦିବସର ଦଶମାସ ଦଶ ଦିବସରେ ତାଙ୍କର ସ୍ତ୍ରୀ ପଦ୍ମାବତୀଙ୍କ ଗର୍ଭରେ ସେହି ପ୍ରଥିତଯଶା ମହାପୁରୁଷ ଜନ୍ମଗ୍ରହଣ କରିଥିଲେ ।

ଦଶମାସ ଦଶଦିବସ ମଧ୍ୟରେ ଶୁକ୍ଳମାଘ ଏକାଦଶୀ ।
ଜନମ ଲଭନ୍ତେ ପିତା ମୋ ଦେଖନ୍ତେ ଅପୁତ୍ରିକ ଦୋଷ ଧ୍ୱଂସି ।

× × × × × ×

ଅଗଣା ଅନ୍ତପାଷ୍ଟ କରିଣ ମୋ ନାମ ଅନେକ ପ୍ରକାରେ ଦେଲେ ।

ଅଚ୍ୟୁତାନନ୍ଦଙ୍କର ଆବିର୍ଭାବକାଳ ନିର୍ଣ୍ଣୟପ୍ରସଙ୍ଗରେ ରଥେ କହିଅଛନ୍ତି ଯେ ପଞ୍ଚ ଶାଖାଙ୍କଠାରୁ ଶ୍ରୀଚୈତନ୍ୟ ବୟସରେ ଜ୍ୟେଷ୍ଠ । ପଞ୍ଚଶଖାଙ୍କ ମଧ୍ୟରେ ଅଚ୍ୟୁତାନନ୍ଦ ବର୍ଷୀୟାନ୍ ବୋଲି ପ୍ରତୀତ ହୁଏ । ପୁନଶ୍ଚ ରଥେ ତାଙ୍କର ବଳରାମ ଦାସ ଓ ବ୍ରହ୍ମାଣ୍ଡ ଭୂଗୋଳ ପ୍ରବନ୍ଧରେ ଲେଖି ଅଛନ୍ତି, "ବଳରାମ ଦାସଙ୍କର

ଆବର୍ତ୍ତିବ କାଳ ୧୪୭୦ ଖ୍ରୀଷ୍ଟାବ୍ଦ କମ୍ବା ତନ୍ନିକଟବର୍ତ୍ତୀ କୌଣସି ବର୍ଷ ହେବା ସମ୍ଭବ । ଏହି ଅନୁମାନରୁ ଦେଖାଯାଉଅଛି ବଳରାମ ଦାସ ଜଗନ୍ନାଥ ଦାସଙ୍କଠାରୁ ବୟସରେ ପ୍ରାୟ ଷୋଡ଼ଶ ବର୍ଷ ବଡ଼ ହେବେ । ଜଗନ୍ନାଥ ଶ୍ରୀଚୈତନ୍ୟଙ୍କଠାରୁ ନ୍ୟୂନବୟସ୍କ ନ ଥିଲେ । ତେଣୁ ଦାସେ ଯେତେବେଳେ ତାଙ୍କ ନିକଟରେ ଦୀକ୍ଷାର୍ଥ ଉପସ୍ଥିତ ହୋଇଥିଲେ ସେତେବେଳେ ସେ ମହାତ୍ମା ବଳରାମଦାସଙ୍କୁ ଦୀକ୍ଷାଦେବା ନିମିତ୍ତ ଆଦେଶ ପ୍ରଦାନ କରିଥିଲେ" । ଅଚ୍ୟୁତାନନ୍ଦ ଦାସ ଶୀର୍ଷକ ପ୍ରବନ୍ଧ ୧୩୦୭ କାର୍ତ୍ତିକ ଉତ୍କଳ-ସାହିତ୍ୟରେ ପ୍ରକାଶିତ । ବଳରାମ ଦାସ ଓ ବ୍ରହ୍ମାଣ୍ଡ ଭୂଗୋଳ ଶୀର୍ଷକ ପ୍ରବନ୍ଧ ୧୩୬୯ ଶ୍ରାବଣ ଉତ୍କଳ-ସାହିତ୍ୟରେ ପ୍ରକାଶିତ । ଉଭୟର କାଳବ୍ୟବଧାନ ଦ୍ୱାଦଶବର୍ଷ; କିନ୍ତୁ ଉଭୟଙ୍କ ଉକ୍ତିରେ ବୈସାଦୃଶ୍ୟ ଲକ୍ଷିତ ହେଉ । ବଳରାମ ଦାସ ଚୈତନ୍ୟଙ୍କଠାରୁ ପ୍ରାୟ ବିଂଶ ବର୍ଷୀୟାନ୍ ଥିଲେ । ଜଗନ୍ନାଥ ଦାସ ଚୈତନ୍ୟ ଚନ୍ଦ୍ରଙ୍କଠାରୁ ବୟସରେ ପ୍ରାୟ ବର୍ଷ କନୀୟାନ୍ ଥିଲେ କାରଣ ସେ ଖ୍ରୀ୧୪୯୦ ଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ଚୈତନ୍ୟଚନ୍ଦ୍ର ୧୪୮୫ ଖ୍ରୀଷ୍ଟାବ୍ଦରେ ଧରା ଧାମରେ ଅବତୀର୍ଣ୍ଣ ହୋଇଥିଲେ । ସେ ୧୫୦୯ ଖ୍ରୀଷ୍ଟାବ୍ଦରେ ଉତ୍କଳକୁ ଶୁଭାଗମନ କରିଥିଲେ । ସେ ସମୟରେ ସେ କିଛିକାଳ ପୁରୀଧାମରେ ରହି ଦେଶାଟନରେ ପ୍ରେମଲୀଳା ବିତରଣ ପୂର୍ବକ ପୁନର୍ବାର ୧୫୧୫ ଖ୍ରୀଷ୍ଟାବ୍ଦରେ ଶ୍ରୀକ୍ଷେତ୍ର ଧାମକୁ ପ୍ରତ୍ୟାବର୍ତ୍ତନ କରି ସ୍ୱଭକ୍ତଙ୍କ ସହି ବିଂଶ ବର୍ଷ ଅତିବାହିତ କରିଥିଲେ ।

ପୂର୍ବେ କଥିତ ହୋଇଅଛି ଯେ ଚୈତନ୍ୟ ଚନ୍ଦ୍ର ୧୫୦୯ ଖ୍ରୀଷ୍ଟାବ୍ଦରେ ପୁରୀଧାମକୁ ଆଗମନ କରିଥିଲେ । ସେ କିୟତ୍‌କାଳ ସେଠାରେ ଅବସ୍ଥାନ କରି ପ୍ରେମଲୀଳା ବିତରଣାର୍ଥ ଦାକ୍ଷିଣାତ୍ୟର ପ୍ରଧାନ ପ୍ରଧାନ ସ୍ଥାନମାନଙ୍କୁ ଗମନ କରିଥିଲେ । ତତ୍‌ପରେ ଶ୍ରୀକ୍ଷେତ୍ରକୁ ପ୍ରତ୍ୟାବର୍ତ୍ତନକରି ରାଜା ପ୍ରତାପରୁଦ୍ର ଦେବଙ୍କୁ ନିଜର ସାକ୍ଷାତ ପ୍ରଦାନ

କରିଥିଲେ । ତହୁଁ ସେ ନୀଳାଚଳରୁ ଭାରତର ଉତ୍ତରାଞ୍ଚଳସ୍ଥିତ ମଥୁରା, ବୃନ୍ଦାବନ, ପ୍ରୟାଗ, ବାରାଣସୀ ପ୍ରଭୃତି ତୀର୍ଥସ୍ଥାନମାନଙ୍କୁ ଗମନ କରି ତତ୍ରତ୍ୟଲୋକଙ୍କୁ ଶ୍ରୀହରିପ୍ରେମରସାସ୍ୱାଦନ କରାଇଥିଲେ। ଏହି କାଳରେ ଚୈତନ୍ୟଚନ୍ଦ୍ରଙ୍କ ସହି ସନାତନଙ୍କର ମିଳନ ହୋଇଥିଲା । (ଚୈତନ୍ୟଚରିତାମୃତ ମଧ୍ୟଲୀଳା ୨୦ପରିଚ୍ଛେଦ ଦ୍ରଷ୍ଟବ୍ୟ ) । ଶ୍ରୀକୃଷ୍ଣଚୈତନ୍ୟ କାଶୀଧାମରୁ ନୀଳାଚଳଧାମକୁ ୧୫୧୫ ଖ୍ରୀଷ୍ଟାବ୍ଦରେ ଫେରି ଆସିଥିଲେ । ଏହି ଅବସରରେ ସନାତନ ମଧ୍ୟ ମଥୁରାରୁ ନୀଳାଚଳକୁ ଆଗମନ କରିଥିଲେ । ଇତିପୂର୍ବେ ସନାତନ ପୁରୀଧାମକୁ ଆଗମନ କରି ନ ଥିଲେ ।

ବିଷ୍ଣୁଙ୍କ ଆବିର୍ଭାବସହି ଅଚ୍ୟୁତାନନ୍ଦଙ୍କ ଆବିର୍ଭାବ ଯୁଗେ ଯୁଗେ ହୋଇଅଛି ଏହା ତାଙ୍କର ସ୍ୱଗ୍ରନ୍ଥ ଓ ସ୍ୱସଖାମାନଙ୍କ ଗ୍ରନ୍ଥରୁ ପ୍ରତିପାଦିତ । ସେ ସତ୍ୟଯୁଗରେ କୃପାଜଳ, ତ୍ରେତାରେ ନଳ ଦ୍ୱାପରରେ ସୁଦାମ ଓ କଳିରେ ନବଦ୍ୱୀପରେ ସୁନ୍ଦରାନନ୍ଦ-ଏହି-ସୁନ୍ଦରାନନ୍ଦ ଚୈତନ୍ୟଚନ୍ଦ୍ରଙ୍କ ବାଲ୍ୟ ସଖା । ସେ ଚୈତନ୍ୟଚନ୍ଦ୍ରଙ୍କ ସହି ପୁରୀଧାମକୁ ଆଗମନ କରିଥିଲେ । ପ୍ରାୟ ଦୁଇ ଏକବର୍ଷ ପୁରୀଧାମରେ ଅବସ୍ଥାନ କରି ସେ ଦେହତ୍ୟାଗ କରିଥିଲେ— ଏବିଷୟ ଅଚ୍ୟୁତାନନ୍ଦଙ୍କ ଶୂନ୍ୟ ସଂହିତାରେ ସୂଚିତ ହୋଇଅଛି । ଦ୍ୱାପର ସୁଦାମ ଗୌରାଙ୍ଗଙ୍କ ବାଲ୍ୟଲୀଳାର ସୁନ୍ଦର ଠାକୁର-ରୂପେ ଅବତୀର୍ଣ୍ଣ ହେବା ଗୌଡ଼ୀୟ ବୈଷ୍ଣବ ଗ୍ରନ୍ଥମାନଙ୍କରେ ଲିଖିତ ଅଛି ।

"ନମଃ ଶ୍ରୀସୁଦାମଚନ୍ଦ୍ରଃ ସୁନ୍ଦରାନନ୍ଦବିଗ୍ରହଃ"
ବ୍ରଜରାଖାଲଗଣ କୀର୍ତ୍ତନ —

ସୁଦାମ ଆଦି କଳାରେ ଜାତ ହେବେ କଳିରେ ଅଛନ୍ତି କଗ୍ରୁ ର
ସେ କଳିଯୁଗରେ ଆମ୍ଭର ସଙ୍ଗରେ ଜନ୍ମିବ ନବଦ୍ୱୀପରେ ।

ସୁଦାମ ସୁନ୍ଦର ନାମକୁ ବନ୍ଦିବ ନୀଳାଚଳେ ହୁଅ ସ୍ଥିତ ।
ତଦନ୍ତେ ଅଚ୍ୟୁତ ନାମକୁ ବର୍ଦ୍ଧିଣ ବ୍ରଜକୁଳେ ହୁଅ ଖ୍ୟାତ ॥
-୮୧-୮୪

ଅଚ୍ୟୁତ ଦାସଙ୍କି ମୋ ନାମ ପ୍ରକାଶ ଶ୍ରୀହରି କରୁଣା ଯେଣୁ
ଚୈତନ୍ୟ ଠାକୁର ସଙ୍ଗେ ଅବତାର ସୁନ୍ଦରାନନ୍ଦଙ୍କି ତେଣୁ ॥ ୧-୧୧
ମୋ ଜନ୍ମ ବୃତ୍ତାନ୍ତ କହୁଁ ତୋ ଅଗ୍ରତ ସୁନ୍ଦରାନନ୍ଦ ମୋ ନାମ
ନୀଳାଚଳେ ଲୀଳା ଦେଖି ତାଙ୍କ ବେଗ ବର୍ଦ୍ଧିଗଲା କେତେଦିନ ।
କ୍ଷେତ୍ରବରରେ ମୋ ସେ ଅଙ୍ଗ ହିଜିଲା ପାଲଟିଲା ଅନ୍ୟଅଙ୍ଗ
ପୂର୍ବ ଆଜ୍ଞା ମୋତେ ଯାହା ସେ କହିଲେ ଶ୍ରୀମୁଖେ ପ୍ରଭୁ ଶ୍ରୀରଙ୍ଗ ॥
୧-୬୭-୬୮

ସୁନ୍ଦରାନନ୍ଦ ୧୫୧୦ ବା ୧୫୧୧ ଖ୍ରୀଷ୍ଟାବ୍ଦରେ ପୁରୀଧାମରେ ଦେହତ୍ୟାଗ କରିଥିବା ସମ୍ଭବପର । ଅଚ୍ୟୁତାନନ୍ଦ ପ୍ରାୟ ୧୫୧୧ ବା ୧୫୧୨ ଖ୍ରୀଷ୍ଟାବ୍ଦରେ ( ୧୪୩୩ ବା ୧୪୩୪ ଶକାବ୍ଦ ମାଘ ଶୁକ୍ଳ ଏକାଦଶୀରେ ) ଜନ୍ମ ପରିଗ୍ରହ କରିଥିଲେ* । ପଞ୍ଚମ-ବର୍ଷରେ ତାଙ୍କର ବିଦ୍ୟାରମ୍ଭ ହୋଇଥିଲା । ବିଦ୍ୟାପଠନରେ ମନଯୋଗ ନଦେବା ଓ ଉଦାସଭାବ ଦର୍ଶାଇବାରେ ତାଙ୍କର ପିତା ମାତା ତାଙ୍କଠାରେ ଦୁଃଖିତ ହୋଇଥିଲେ । ସେଥିହେତୁ ସେ ନିଜର ଆତ୍ମୀୟ ସ୍ୱଜନଙ୍କର ତିରସ୍କାରର ପାତ୍ର ହୋଇଥିଲେ ।

---

* ଦୁଃଖର କଥା କଲିକତା ବିଶ୍ୱବିଦ୍ୟାଳୟର ଓଡ଼ିଆ ଏମ୍, ଏ ର ଅଧ୍ୟାପକ ଓ ଓଡ଼ିଆ ସାହିତ୍ୟ ପରିଚୟର ସମ୍ପାଦକ ପ୍ରବୀଣ ଶ୍ରୀବିଜୟଚନ୍ଦ୍ର ମଜୁମଦାର ତାଙ୍କ ସାହିତ୍ୟପରିଚୟର ଦ୍ୱିତୀୟଖଣ୍ଡର ଭୂମିକାରେ କହିଅଛନ୍ତି ଯେ ଅଚ୍ୟୁତାନନ୍ଦ ଅଭିମନ୍ୟୁ ସାମନ୍ତସିଂହାରଙ୍କ ମୃତ୍ୟୁପରେ ଓ ଉତ୍କଳରେ ଇଂରାଜ ସରକାରଙ୍କ ଆଧିପତ୍ୟର ପ୍ରାକ୍କାଳରେ ଜନ୍ମ ପରିଗ୍ରହ କରିଥିଲେ । ବିଜୟବାବୁଙ୍କର ଏପରି ଉକ୍ତି ତାଙ୍କର ଉତ୍କଳ ସାହିତ୍ୟ ଆଲୋଚନାର ଅଭାବ ପ୍ରକାଶ କରୁଅଛି ମନେ । ଉତ୍କଳର ସାହିତ୍ୟିକଙ୍କ ସାହାଯ୍ୟ ନେଇଥିଲେ ସେ ଏପରି ଭ୍ରମମାନ ଦୂର କରିପାରି ଥାଆନ୍ତେ ॥

ଧର୍ମଭାବ ତାଙ୍କ ହୃଦୟକୁ ଏପରି ଦୃଢ଼ଭାବରେ ଅଧିକାର କରିଥିଲା ଯେ ବିଷୟ ବାସନାଦ୍ୱାରା ତାହା ବିଚଳିତ ହୋଇ ନଥିଲା । ବୃଦ୍ଧ ଦୀନବନ୍ଧୁ ସପୁତ୍ର ପୁରୀଧାମକୁ ଜଗନ୍ନାଥ ଦର୍ଶନ ନିମନ୍ତେ ଯାଇଥିଲେ । ପୁରୀ ବଡ଼ଦାଣ୍ଡରେ ଅଚ୍ୟୁତ ସ୍ୱପିତାଙ୍କ ସହ ଜଗତ୍ପାବନ ଚୈତନ୍ୟଚନ୍ଦ୍ରଙ୍କୁ ଦର୍ଶନ କରିଥିଲେ । ଦୀନବନ୍ଧୁ ଓ ତତ୍ପୁତ୍ର ଅଚ୍ୟୁତାନନ୍ଦଙ୍କ ଭକ୍ତିରେ ଚୈତନ୍ୟ ଚନ୍ଦ୍ର ଅତିଶୟ ପ୍ରୀତ ହୋଇ ଅଚ୍ୟୁତଙ୍କୁ ନାମକରଣ କରିବାକୁ ସନାତନ ଗୋସ୍ୱାମୀଙ୍କୁ ଆଦେଶ ପ୍ରଦାନ କରିଥିଲେ । ଏଥିରୁ ସ୍ପଷ୍ଟ ପ୍ରତୀତ ହୁଏ ଅଚ୍ୟୁତଙ୍କ ଷଷ୍ଠ ବା ସପ୍ତମ ବର୍ଷରେ (୧୫୧୭ବା ୫୧୮ଖ୍ରୀ) ନାମକରଣ ହୋଇଥିଲା । ଉପରୋକ୍ତ ଉକ୍ତିର ସମର୍ଥନ ନିମିତ୍ତ ନିମ୍ନଲିଖିତ ପଂକ୍ତିମାନ ଶୂନ୍ୟସଂହିତାରୁ ଉଦ୍ଧୃତ ହେଲା ।

ପାଞ୍ଚବରଷେ ବିଦ୍ୟାକର୍ମ କରିଣ ବେଦ୍ୟାପଠନକୁ ମୋତେ ।
ତର୍ଜନ କରିଣ ବିଦ୍ୟା ପଢ଼ିବାକୁ ପିତା ବୋଲୁଥାନ୍ତି କେତେ ।

× × × ×

× × × ×

ଉଦାସ ମତ ଯେ ଦେଖି ମୋର ମାତା ଆଶ୍ୱାସନା ମୋତେକରି
ଗୃହର ବେଭାର କରେ ନିରନ୍ତର ମୋପରେ ସେନେହ ଧରି ।
ଥୋକେ ଗ୍ୟାତି ଲୋକ ବାନ୍ଧବ ସହିତ ବୋଲନ୍ତି କଟୁ ବାକ୍ୟରେ
ପୂର୍ବର ଚରିତ କର୍ମର ନିଶ୍ଚିତ ଉଦାସ ହେଲି ମନରେ ।
ସୁଗତି ଉଗିଲା ବାସନା ବସିଲା ଶ୍ରୀକୃଷ୍ଣେ ମନ ନିବେଶି ।
ଚୈତନ୍ୟ ଗୋସାଇଁ ବିଜେ କରିଛନ୍ତି ବଡ଼ଦାଣ୍ଡରେ ସେ ଆସି ।
ପିତାଙ୍କ ସଙ୍ଗରେ ଦର୍ଶନ କଲି ମୁଁ ଚରଣେ ପଡ଼ିଲି ଯାଇ
ବାସନା ହେତୁ ମୋ ଅଙ୍ଗେ ବାକେ ଯହୁଁ ଗ୍ୟାନ ପ୍ରକାଶିଲା ତହୁଁ ।
**ନାମକରଣ ମୋତେ କରିବାକୁ** ସେ ପ୍ରଭୁଙ୍କ ଆଜ୍ଞା ହୋଇଲା

ଶ୍ରୀଚରଣେ ଥୋଇ ପେଅର ମୋହୋର ସଙ୍ଖ୍ୟା ଗୋଟିଏ ଥୋଇଲା ।
ଶ୍ରୀସନାତନ ଗୋସାଇଙ୍କୁ ଗୃହନ୍ତେ ଆଜ୍ଞା ଦେଲେ ଶଚୀସୁତ
ଅଚ୍ୟୁତାନନ୍ଦଙ୍କୁ ତୁମ୍ଭେ ଉପଦେଶ କର ହେବ ଯାଇ ସୁଚତୁ ।
ଆଜ୍ଞାକୁ ପାଇ ସନାତନ ଗୋସାଇଁ ସଙ୍ଗେ ସୁଖେ ଘେନିଗଲେ
ଦକ୍ଷିଣ ପାରୁଶ ବଟମୂଳେ ବସି କର୍ଣ୍ଣେ ଉପଦେଶ ଦେଲେ ।

୧-୪୪-୪୩

ଏହି ଦୀକ୍ଷା ବା ନାମକରଣାନନ୍ତରର ଅଚ୍ୟୁତ ପିତାଙ୍କ ସ୍ୱପ୍ନ ନିପୁର ବା ତଳକଣା ଗ୍ରାମକୁ ପ୍ରତ୍ୟାବର୍ତ୍ତନ କରିଥିଲେ ।

ଉପରୋକ୍ତ ବିଷୟ ସମ୍ବନ୍ଧେ ଗୁରୁଭକ୍ତି ଗୀତା ୩ ଖଣ୍ଡ ଦଶମପଟଳ ବର୍ଣ୍ଣିତ ବିଷୟ ସମ୍ପୂର୍ଣ୍ଣ ପୃଥକରୂପେ ପରିଦୃଷ୍ଟ ହୁଏ ତାହା ନିମ୍ନରେ ଉଦ୍ଧୃତ କରା ହେଲା :—ଅଚ୍ୟୁତାନନ୍ଦ ତାଙ୍କ ଶିଷ୍ୟ-ମାନଙ୍କୁ କହୁଅଛନ୍ତି—

ଶୁଣ ଯାହା ପଚାରିଲ ହେତୁ କରି ମନ ।
ଆମ୍ଭର ବସାଟି ତିଳକଣା ନଗ୍ରସ୍ଥାନ ।
ଚନ୍ଦ୍ରଭାଗା ନଦୀକୂଳ ଲବଣଧାର କୂଳ ।
ଦୀନବନ୍ଧୁ ପିତାଙ୍କର ତହିଁରେ ଯେ ଥଳ ।
ପଦ୍ମାନାମ ମାତା ମୋର ସେ ସ୍ଥାନର ଘର ।
ବିଦ୍ୟା ପଢ଼ାଇଣ ଥିଲେ ବିପ୍ର ସୁଗ୍ୟନର
ଗ୍ରାମ ପଶ୍ଚିମ ଭାଗ ଅଶ୍ୱତ୍ଥ ମୂଳରେ ।
ପଞ୍ଚଗୋଟି ଗୃହ ବସିଥିଲୁଁ ସେହିଠାରେ ।
ଅପୂର୍ବ ମୂରତି ଶୋଭା ଗଉର ସୁନ୍ଦର
ବିଶ୍ରାମ କଲେକ ଆସି ସେହି ଯେ ସ୍ଥାନର
ପଚାରିଲେ ତୁମ୍ଭର ଯେ ମାତା ପିତା କେହୁ
ଡାକଆଣ ଆମ୍ଭର ଯେ କଥା ରହିଥାଉ ॥
ଆଜ୍ଞା ପାଇଗଲୁ ମୁହିଁ ପିତାଙ୍କର ପାଶ ।

ଦୀନବନ୍ଧୁ ପିତା ମୋର ହୋଇଲେ ପ୍ରବେଶ ।
ପିତାଙ୍କୁ ବୋଇଲେ ଏହୁ ବାଳକ ଆମ୍ଭର
ହରିନାମ ଦେବୁ ଆମ୍ଭେ ଶରଧା ମନର
ସନମତ କରି ପିତା ଗୃହକୁ ଚଳିଲେ ।
ହରି ଦୀକ୍ଷା ପୂଜାବିଧିମାନ ସଜାଡ଼ିଲେ ।
ବୈଶାଖ ଶୁକ୍ଳପକ୍ଷ ଏକାଦଶୀ ତିଥି ।
ସୋମବାର ମାହେନ୍ଦ୍ର ଯେ ଯୋଗବାର ସ୍ଥିତି ।
ହରିନାମ ଦେଲେ ମୋତେ ସେ ଦିନରେ ପୁଣ
ପିତା ପଚାରିଲେ ପ୍ରଭୁ କିସ ତୁମ୍ଭ ନାମ ।
କାହିଁ ତୁମ୍ଭଘର ବୃତ୍ତି କାହିଁ ତୁମ୍ଭ ସ୍ଥାନ ।
କେଉଁଠାରେ ଏ ବାଳକ କରିବ ଦର୍ଶନ ।
ନୀଳଗିରି ଦକ୍ଷିଣ ଯେ ସମୁଦ୍ର ତଟରେ
ଚୈତନ୍ୟମଣ୍ଡଳୀ ବୋଲି ପଚାରି ସେଠାରେ
ଆମ୍ଭ ଦରଶନ ହେବ ସେହିଠାରେ ପୁଣ
ଆମ୍ଭ ଜନ ବୋଲି ଆମ୍ଭେ ଆଦରିଲୁ ଜାଣ
ଆମ୍ଭେ ଅଟୁ ଶଚିସୁତ ଚୈତନ୍ୟ ଠାକୁର
ଶରଧା ବଳିଲା ଆମ୍ଭ ପୁତ୍ରଠାରେ ତୋର
ଅନୁଗ୍ରହେ ନୀଳଗିରି ଠାବରୁ ଅଇଲୁ ।
ଓଡ଼ରାଷ୍ଟ୍ର ଉଦ୍ଧାରଣେ ଏ ପୁତ୍ରକୁ କଲୁ ।
ଗଉରବର୍ଣ୍ଣ ଗୁଡ଼ଣ କୃଷ୍ଣବର୍ଣ୍ଣ ହେଲେ
ତ୍ରିଭଙ୍ଗୀ ହୋଇଣ ବଂଶୀ ହସ୍ତରେ ଧଇଲେ ।
ବେନଭୁଜେ ଧଇଲେ ଯେ ଦଣ୍ଡକମଣ୍ଡଳ
ଆର ବେନଭୁଜେ ଅଟୁ ବାହ୍ମେଶର ହୁଳ
ଅପୂର୍ବ ରୂପ ଦେଖିଣ ପଡ଼ି ପାଦତଳ
ସ୍ୱୟଂ କୃଷ୍ଣ ବିଜେ କଲେ ସୁଭାଗ୍ୟ କର୍ମର ।
ଅପୂର୍ବ ମଣୋହି ସଞ୍ଚା କଲେକ ଭୋଜନ ।
ଏମନ୍ତ ହୋଇଣ ଆମ୍ଭ ଗୁରୁଙ୍କ ଦର୍ଶନ ।

ହରେ କୃଷ୍ଣ ମନ୍ତ୍ର କହି କାମବୀଜ ଦେଲେ ।
ଶ୍ରୀଁ ବୀଜରେ ରାଧାମନ୍ତ୍ର ବୁଝାଇଲେ ।
ଆଦିନାମ ତୁମ୍ଭର ଅଟଇ ପୂର୍ଣ୍ଣ କାମ ।
ଏକଥା କହିବା ହେଉ ଶୁଣିଥାନ୍ତୁ ଶିଷ୍ୟ ।
ଆତ୍ମନାମ ଗୌରହରି ସଂସାରେ ବିହରି
କଳିକାଳ ଦେଖିଣ ଯେ ଧରିଲୁ ଏ ଶରୀ ।

ଭଇରାଗ ବେଶ ଧରି ଡୋର କଉପୀନ
ଆମ୍ଭ ଭେଖ ଧରିଭକ୍ତେ ବିହରି ମେଦିନୀ ।
ଆବର ଅଚ୍ୟୁତ ତୁମ୍ଭେ ରାହାସ ରଞ୍ଜିତ
ଓଡ଼ରାଷ୍ଟ୍ରେ ତୁମ୍ଭର ଯେ କଥା ରହିଥିବ ।

ଶୂନ୍ୟସଂହିତା ଓ ଗୁରୁଭକ୍ତି ଗୀତା ମହାପୁରୁଷ ଅଚ୍ୟୁତାନନ୍ଦଙ୍କ ରଚିତ ଏହା ଉଭୟ ଗ୍ରନ୍ଥର ଭଣିତାରୁ ସ୍ପଷ୍ଟ ଜଣାଯାଏ । ତେବେ ମହାପୁରୁଷଙ୍କ ସ୍ୱଉକ୍ତିରେ ଏପରି ବୈସାଦୃଶ୍ୟ ଲକ୍ଷିତ ହେବାର କାରଣ କଣ । ଶ୍ରୀଚୈତନ୍ୟଚନ୍ଦ୍ର ନିଜେ ଦୀକ୍ଷା ଦେବାକଥା ଗୁପ୍ତ ରଖିବା ଅଭିପ୍ରାୟରେ ଅଚ୍ୟୁତାନନ୍ଦଙ୍କୁ ପୁରୀଧାମ ଗମନାର୍ଥ ଆଦେଶ ଦେଇ ଯାଇଥିଲେ ଓ ସନାତନଙ୍କ ଦ୍ୱାରା ପୁରୀଧାମରେ ତାଙ୍କର ନାମକରଣ କରାଇଥିଲେ । ସନାତନାଦି ଗୋସ୍ୱାମୀମାନଙ୍କ ମାହାତ୍ମ୍ୟ ପ୍ରଖ୍ୟାପନରେ ବାଧା ଆଶଙ୍କାକରି ବୋଧହୁଏ ଏପରି ଉପାୟ ଅବଲମ୍ବିତ ହୋଇଥିଲା । କେହି କେହି ବା କହି ପାରନ୍ତି ଯେ, ଚୈତନ୍ୟଚନ୍ଦ୍ରଙ୍କର ଅନ୍ତର୍ଦ୍ଧାନରେ ଯାଇ ଅଚ୍ୟୁତଙ୍କୁ ଦର୍ଶନ ଦେବା କାଳ୍ପନିକ ଛଡ଼ା ଅନ୍ୟ କିଛି ନୁହେଁ । ଏ ଉକ୍ତି ଜଡବାଦୀର ମୁଖରେ ସମ୍ଭବପର । ଚୈତନ୍ୟଙ୍କ ବିଭୂତି ପ୍ରକାଶ ସ୍ଥାନେ ସ୍ଥାନେ ଚୈତନ୍ୟ ଚରିତାମୃତାଦିରେ ବର୍ଣ୍ଣିତ ଅଛି । ସେ ନିଜେ ଭକ୍ତ ଓ ଭଗବାନ ଥିଲେ । ତହୁଁ ଜପ ତପ ଜ୍ଞାନ ଧ୍ୟାନ ଓ ଯୋଗାଦି ସମସ୍ତ ବିଷୟ ତାଙ୍କଠାରେ ସମ୍ଭବପର ଥିଲା । କେହି କେହି କହି ପାରନ୍ତି ଗୁରୁଭକ୍ତି ଗୀତା ଅଚ୍ୟୁତାନନ୍ଦଙ୍କ

କୌଣସି ଶିଷ୍ୟ ପ୍ରଶିଷ୍ୟଙ୍କ ଦ୍ୱାରା ରଚିତ ହୋଇ ମହାପୁରୁଷଙ୍କ ନାମରେ ଭଣିତା ହୋଇଅଛି । ଏହା ସ୍ୱୀକାର୍ଯ୍ୟ ଯେ, ଭକ୍ତ ବୈଷ୍ଣବମାନେ ପ୍ରଧାନ ପ୍ରଧାନ ମହାପୁରୁଷଙ୍କ ନାମରେ ଗ୍ରନ୍ଥ ରଚନା କରିଅଛନ୍ତି ତାହାର ନିଦର୍ଶନ ସ୍ୱରୂପ ଛତିଆ ଗାଦିର ପ୍ରତିଷ୍ଠାତା ହାଡ଼ିଦାସ (ଯେ କି ଅଚ୍ୟୁତାନନ୍ଦଙ୍କର ଅବତାର-ରୂପେ ସେ ସମ୍ପ୍ରଦାୟର ଲୋକଙ୍କ ଦ୍ୱାରା ଗୃହୀତ ହୋଇ ଅଛନ୍ତି) ଅଚ୍ୟୁତାନନ୍ଦଙ୍କ ନାମରେ ଅନେକ ଭଜନାଦି ରଚନା କରିଅଛନ୍ତି । ଏ କଳ୍ପନା ଏ କ୍ଷେତ୍ରରେ ସମ୍ଭବପର ନୁହେ । କାରଣ ଶୂନ୍ୟସଂହିତା ଓ ଗୁରୁଭକ୍ତି ଗୀତା ସାଧାରଣ ବୈଷ୍ଣବ ସାଧକଙ୍କ ଦ୍ୱାରା ଲିଖିତହେବା ଅନୁମିତ ହେଉନାହିଁ । ଯେଉଁମାନେ ଏହି ଗ୍ରନ୍ଥଦ୍ୱୟ ବିଗ୍ରହ ଓ ଶ୍ରମସ୍ୱୀକାର ପୂର୍ବକ ପାଠକରି ଅଛନ୍ତି ସେମାନେ ନିଶ୍ଚୟ କହିବେ ଯେ ଏହି ଦୁଇଗ୍ରନ୍ଥ ସେହି କ୍ଷଣ ଜନ୍ମା ଯୋଗୀପ୍ରବର ଭକ୍ତଶିରୋମଣି ସିଦ୍ଧପୁରୁଷ କୃଷ୍ଣଲୀଳାରସ ପାୟୀ ମହାପୁରୁଷ ଅଚ୍ୟୁତାନନ୍ଦ ଗୋସ୍ୱାମୀପ୍ରସୂତ ।

ଏହି ଦୀକ୍ଷା ବା ନାମକରଣାନନ୍ତର ଅଚ୍ୟୁତ ପିତାଙ୍କ ସହି ନିପୁର ବା ତିଳକଣା ଗ୍ରାମକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ନାମ କରଣର 'ଦଶମାସ ଦଶବର୍ଷ' ପରେ ଅର୍ଥାତ୍ ପ୍ରାୟ ୧୫୨୭ ବା ୧୫୨୮ ଖ୍ରୀଷ୍ଟାବ୍ଦରେ ତାଙ୍କ ଚିତ୍ତ ଚଞ୍ଚଳ ହୋଇ ଯାଇଥିଲା ଏବଂ ସେ ସେହି ସମୟରେ ସ୍ୱଗ୍ରାମ ନିପୁରର ପଶ୍ଚିମ ବଟମୂଳରେ ଧ୍ୟାନସ୍ଥ ଥାଇ ବ୍ରହ୍ମାଣ୍ଡ ଠାକୁରଙ୍କ ଦର୍ଶନ ଅନୁଭବ କରିଥିଲେ । ସେହି ମହାନନ୍ଦମୟ ପୁରୁଷଙ୍କ ଦିବ୍ୟ ବାଣୀରେ ଅଚ୍ୟୁତଙ୍କ ହୃଦୟ ଜ୍ଞାନାମୃତରେ ଆପ୍ଲୁତ ହୋଇଥିଲା ଏବଂ ସର୍ବାଙ୍ଗ ଜ୍ୟୋତିରେ ବିକସିତ ହୋଇଥିଲା । ଧ୍ୟାନର ବିଳୟରେ, ସ୍ୱପ୍ନର ତିରୋଧାନରେ ସେ ସମସ୍ତ ଅନୁଭୂତ ବିଷୟ ଭାବିବାକୁ ଲାଗିଥିଲେ । ସେହି ପ୍ରଭୁଙ୍କ ପ୍ରାପ୍ତି ଉଦ୍ଦେଶ୍ୟରେ ମନ ଉଦ୍ବିଗ୍ନ, ହୃଦୟ ଆଲୋଡ଼ିତ ହୋଇଥିଲା କାରଣ ସେ ସମସ୍ତ ବିଷୟକୁ ସତ୍ୟରୂପେ ଅନୁଭବ କରିଥିଲେ । ସବୁ

ବିଷୟ୍‌ରେ ତାଙ୍କର ଜ୍ଞାନର ସ୍ୱତଃ ସ୍ଫୁରଣ ହେଲା । ଗୀତା, ଭାଗବତ, ମନ୍ତ୍ର, ଯନ୍ତ୍ର, ତନ୍ତ୍ର ସିଦ୍ଧାନ୍ତ ଯୋଗାନ୍ତ, ନାଗାନ୍ତ ବେଦାନ୍ତ ଆଦିରେ ବ୍ୟୁତ୍ପତ୍ତି ହେଲା । କ୍ରମଶଃ ତାଙ୍କ ଜ୍ଞାନର ପରସର ଅଭ୍ୟନ୍ତରୂପେ ବୃଦ୍ଧି ଲାଭ କଲା । ତାହା ଯେପରି ବିଶାଳ ସେହିପରି ଗମ୍ଭୀର ଥିଲା ।

"ଦଶମାସ ଦଶବରଷ ଅନ୍ତରେ ହୋଇଲା ଏମନ୍ତ ପୁଣ ।
କର୍ମର କଷଣ ବନ୍ଧନ ଫିଟିଲା ପ୍ରବେଶ ହେଲା ନିର୍ଗୁଣ ।
ଚଞ୍ଚଳ ଚିତ୍ତ ମୋ ନିଶ୍ଚଳ ହୋଇଲା ରହିଲା ନିରତେ ମନ ।
ସ୍ୱଦୟା କଲେ ସେ ବ୍ରହ୍ମାଣ୍ଡ ଠାକୁର ବିଜେକଲେ ଗୁରୁବ୍ରହ୍ମ ।"

+ + +

ଅଚ୍ୟୁତାନନ୍ଦ ତାହାଙ୍କୁ ନମସ୍କାର କରି ତାଙ୍କର ପରିଚୟ ଜିଜ୍ଞାସା କରିବାରୁ ସେ କହିଲେ ।

"ଅନାଦି ପୁରୁଷ ଆମ୍ଭେ ତୋର ଗୁରୁ ଚିହ୍ନି ନ ପାରିଲୁ ଯେଣୁ ।
ମହାନନ୍ଦ ଆମ୍ଭ ନାମ ଯେ ଅଟଇ ମନୁଜାତ ହେଲୁ ଯେଣୁ ।
ଆମ୍ଭ ଗୁରୁନାମ କହିବା ଶୁଣିର ପରମାନନ୍ଦ ଅଟନ୍ତି ।
ପରମାନନ୍ଦଙ୍କ ଗୁରୁ ନାମ ତହିଁ ବ୍ରହ୍ମାନନ୍ଦ ପ୍ରକଟନ୍ତି ।
ବ୍ରହ୍ମାନନ୍ଦ ଯେହୁ ଅଛେଦ୍ୟ ଅବ୍ୟକ୍ତ ଦିବ୍ୟାନନ୍ଦ ତହୁଁ ଜାଣ ।
ତାଙ୍କ ଗୁରୁନାମ ସଚ୍ଚିଦାନନ୍ଦଟି ସ୍ୱୟଂ ଅନାଦି ନିର୍ବାଣ ।

× × ×

"ପ୍ରସନ୍ନ ହୋଇଣ ପରମବ୍ରହ୍ମ ଯେ ଅଣାକ୍ଷର ମନ୍ତ୍ର ଦେଲେ ।
ଉପଦେଶ ଦେଇ ବ୍ରହ୍ମାଣ୍ଡ ଠାକୁର ଅନ୍ତର୍ଦ୍ଧାନ ହୋଇଗଲେ ।
ସ୍ୱପନ ଚେତ ମୁଁ ତତକ୍ଷଣେ ଉଠି ଗୁହାରିଲି ମୁଁ ଦଣ୍ଡବତ ।
କେଉଁଣେ ଗଲେ ପ୍ରଭୁ କୃପାଜଳନିଧି ମନ ହେଲା ଉଦବେଗ ।
ପଶ୍ଚିମ କଟର ମୂଳେ ବସି ମୁହିଁ ସ୍ୱପନ କଥା ପାଞ୍ଚିଲି ।
ସେ ରୂପକୁ ଧ୍ୟାନ କରିଣ ମୁହିଁ ଯେ ସାକ୍ଷାତ ପ୍ରାୟେ ମଣିଲି ।
ସ୍ଫୁରିଲା ଯେ ପଦ ସେ ଜ୍ଞାନରେ ଭେଦ ଗୀତା ଭାଗବତ ଆଦି ।
ସିଦ୍ଧାନ୍ତ ବେଦାନ୍ତ ସର୍ବ ବିଧିମତ ମନ୍ତ୍ର ତନ୍ତ୍ର ଯେ ଇତ୍ୟାଦି ।"

ସେ ସ୍ୱୀୟ ସ୍ଥାନକୁ ତାଙ୍କର ଗୋପାଳ ଶିଷ୍ୟମାନଙ୍କ ମଧ୍ୟରେ ବିତରଣ କରିଥିଲେ । ରାମଚନ୍ଦ୍ର ଓ ଭରତଙ୍କସହ ଦ୍ୱାଦଶ ଗୋପାଳ ମୁକୁନ୍ଦ, ଅନନ୍ତ, ବସ୍ତ୍ର, ପବନ, ସୁଦାମ, ଯାଦବ, ବାଳକ, ମଧୁ, ମଥୁର, ଉଦ୍ଧାନ, ଗୋବିନ୍ଦ, ବୃନ୍ଦାବନଙ୍କ ମଧ୍ୟରେ ବିତରଣ କରିଥିଲେ । ସେ ସେମାନଙ୍କ ସହ ପୁରୀ ଧାମକୁ ଯାତ୍ରା କରିଥିଲେ । ସେଠାରେ ଗୋପାଳମାନଙ୍କସହ ପ୍ରଭୁଚୈତନ୍ୟଚନ୍ଦ୍ରଙ୍କଠାରୁ ଖୋଳ କରତାଳ ଗ୍ରହଣ କରି ଚୈତନ୍ୟମଣ୍ଡଳୀରୁ ଗୀତ, ବାଦ୍ୟ, ତାଳ, ମାନ, ମୂର୍ଚ୍ଛନା ପ୍ରଭୃତି ଶିକ୍ଷାକରିଥିଲେ । ଚୈତନ୍ୟଚନ୍ଦ୍ରଙ୍କଠାରୁ ମନ୍ତ୍ର ଉପଦେଶ ଓ କରତାଳ ଗ୍ରହଣ କରି ଓ ଡୋର କୌପୀନ ପ୍ରାପ୍ତ-ହୋଇ ବୈରାଗ୍ୟରେ ତୀର୍ଥ ପର୍ଯ୍ୟଟନ କରିଥିଲେ । ଦକ୍ଷିଣରେ ରାମେଶ୍ୱର ତହୁଁ ଉତ୍ତର-ପଶ୍ଚିମାଭିମୁଖରେ ଚଳକୂଟ ଦ୍ୱାରକା ଦେଇ ଅଯୋଧ୍ୟା, କାଶୀ, ପ୍ରୟାଗ, ମଥୁରା ଦର୍ଶନକରି ବୃନ୍ଦାବନରେ ଉପସ୍ଥିତ ହୋଇଥିଲେ । ସେ ସେଠାରେ ପ୍ରାୟ ଦୁଇ ବର୍ଷ ଅତି-ବାହିତ କରି ଗଙ୍ଗା ଗୌତମୀ ତୀର୍ଥ ଭ୍ରମଣ ପୂର୍ବକ ଅବଶେଷରେ ରଥଯାତ୍ରାକାଳରେ ନୀଳାଚଳକୁ ୧୫୩୦ ବା ୧୫୩୧ଖ୍ରୀ ରେ ଯାତ୍ରା କରିଥିଲେ । ବଡ଼ଦାଣ୍ଡରେ ଚୈତନ୍ୟଚନ୍ଦ୍ରଙ୍କ ସହିତ ତାଙ୍କର ପୁନଃ ସାକ୍ଷାତ ହୋଇଥିଲା । ଚୈତନ୍ୟଚନ୍ଦ୍ରଙ୍କ ଆଦେଶ ମତେ ସେ ବଳରାମ, ଜଗନ୍ନାଥ ପ୍ରଭୃତି ଶିଷ୍ୟ ଗଣଙ୍କ ସହ ନୃତ୍ୟ ଗୀତରେ ଯୋଗ ପ୍ରଦାନ କରିଥିଲେ ।

"ରାମଚନ୍ଦ୍ର ମୁଁ ନାମ ଭରତ ଯାଦବ ବଳକୁ ଘେନଣ ସଙ୍ଗେ ।
ନୀଳାଚଳେ ଯାଇ ଗହ୍ୱଟଣ ଖଟିଲି ଭଗତ ଖଞ୍ଜରେ ରଙ୍ଗେ ।
ସୁଦୟା କରି ନବଦ୍ୱୀପ ଈଶ୍ୱର ଖୋଳ କରତାଳ ଦେଲେ ।
ସଂକୀର୍ତ୍ତନକରି ରାଧାଏ ଲୀଳାଯେ ସଂସାରେ ରତ ହୋଇଲେ ।
ତାନ ମାନ ଯେତେ ମୂର୍ଚ୍ଛନା ସହିତେ ଶିଖାଇଲେ ଦୟାକରି ।
ମନ୍ତ୍ର ଉପଦେଶ କରି କରତାଳ ଯୋଡ଼ି ସେହୁ ଦେଲେ ଧରି ।
ଚୈତନ୍ୟ ଠାକୁର ଶ୍ରୀମୁଖ ଆଜ୍ଞାରେ ଡୋର କଉପୀନ ନେଲି

ସିଂହାସନ ପ୍ରଭୁ ଦର୍ଶନ କରିଣ ତୀର୍ଥ ପର୍ଯ୍ୟଟନେ ଗଲି ।
ରାମେଶ୍ୱର ଚିତ୍ରକୂଟହିଁ ଦେଖିଲି ଅଯୋଧ୍ୟା ଦ୍ୱାରକାଆଦି ।
କାଶୀ ବାରାଣସୀ ପ୍ରୟାଗ ସହିତେ ଗୋପ ମଥୁରାକୁ ଭେଟି ।
ବୃନ୍ଦାବନେ ବେନି ଚତୁର୍ମାସ୍ୟା ଲଭି ଯମୁନା ସ୍ନାହାନ ସାରି ।
ଗଙ୍ଗା ଗଉତମୀ ତୀର୍ଥ ଆଦି ଭ୍ରମି ଆଇଲି ଯେ ନୀଳଗିରି ।
ରଥେ ଦର୍ଶନ କରିଣ ଜଗନ୍ନାଥ ବଳଭଦ୍ରଙ୍କୁ ଦେଖିଲି ।
ସୁଭଦ୍ରା ସୁଦର୍ଶନ ଆଦି କରିଣ ରଥ ପ୍ରଦକ୍ଷିଣ କଲି ।"

ଅଗାଧବୋଧସମ୍ପନ୍ନ ଶ୍ରୀଚୈତନ୍ୟଚନ୍ଦ୍ର ଅବକାଶ ମତେ ମୁକ୍ତି-ମଣ୍ଡପରେ ବସି ତାନ୍ତ୍ରିକ ସ୍ମାର୍ତ୍ତ ବ୍ରାହ୍ମଣ ପଣ୍ଡିତମାନଙ୍କର କୂଟ ପ୍ରଶ୍ନର ଉତ୍ତର ପ୍ରଦାନ କରୁଥିଲେ ଓ ଅନ୍ୟାନ୍ୟଙ୍କର ଶାସ୍ତ୍ର ବିଷୟକ ସଂଶୟମାନ ଛେଦନ କରୁଥିଲେ ।

ମହାପଣ୍ଡିତ ଶ୍ରୀଚୈତନ୍ୟ ଗୋସାଇଁ ବେଦ ବେଦାନ୍ତରେ ସାର ।
ଯେ ଯେମନ୍ତେ ବିଦ୍ୟା ଶଙ୍ଖୋଳା କରନ୍ତି ପଡନ୍ତି ସେହି ପ୍ରକାର ।
ପଣ୍ଡିତ ବ୍ରାହ୍ମଣ କେତେହେଁ ମିଳିଣ ମୁକ୍ତି ମଣ୍ଡପରେ ବସି ।
ପୁରାଣାଦି ଶାସ୍ତ୍ର ଅର୍ଥ କରୁଥାନ୍ତି ଆପଣା ଶ୍ରୀମୁଖେ ହସି ।

ଏ ଦେଶରେ ପ୍ରବାଦ ଅଛି ଯେ, ଚୈତନ୍ୟଙ୍କ ବୈଷ୍ଣବ ଧର୍ମରେ ପ୍ରତାପରୁଦ୍ରଙ୍କ ମତ ଆକୃଷ୍ଟ ହେବାର ଦେଖି ଉତ୍କଳୀୟ ସ୍ମାର୍ତ୍ତ ବ୍ରାହ୍ମଣ ପଣ୍ଡିତମାନେ ସାତିଶୟ କ୍ଷୁବ୍ଧ ହୋଇଥିଲେ । ସେମାନେ ବହୁଯତ୍ନ ଓ କୌଶଳରେ ଚୈତନ୍ୟ ଚନ୍ଦ୍ରଙ୍କୁ ତର୍କରେ ପରାଜୟ କରିବାକୁ ଚେଷ୍ଟା କରିଥିଲେ । କିନ୍ତୁ ତାଙ୍କର ପ୍ରଚଣ୍ଡ ଜ୍ଞାନାନଳରେ ସେମାନଙ୍କର ମାୟାତର୍କତନ୍ତୁ ଭସ୍ମୀଭୂତ ହୋଇଯାଇଥିଲା । ବଳରାମପ୍ରମୁଖ ଶୂଦ୍ର ବୈଷ୍ଣବ ମାନଙ୍କ ସ୍ଥାନେ ସ୍ଥାନେ ବେଦାନ୍ତ ମତ ପ୍ରଖ୍ୟାପନ ଓ ଶାସ୍ତ୍ରାର୍ଥ ବିତରଣ କରିବା ଦେଖି ସେମାନଙ୍କ ଈର୍ଷା ଜାତ ହୋଇଥିଲା । ତହୁଁ ସେମାନେ ରାଜ ପରିଷଦଙ୍କ ଦ୍ୱାରା ରାଜା ପ୍ରତାପରୁଦ୍ରଙ୍କୁ ପ୍ରବର୍ତ୍ତିତ କରାଇ ଶୂଦ୍ର ବୈଷ୍ଣବମାନଙ୍କୁ ସ୍ୱୀୟ ପାଣ୍ଡିତ୍ୟ ପରୀକ୍ଷାର୍ଥ ଆହ୍ୱାନ କରିଥିଲେ ।—

ଏହା ଦେଖି ଦ୍ୱିଜମାନେ କହିଲେ ଯେ ରାଜନ ଆଗରେ ପୁଣ ।
ଶୁଦ୍ର ବଇଷ୍ଣବମାନେ ତ ସିଦ୍ଧାନ୍ତ କରୁଅଛନ୍ତି ଭଜନ ।
ବଳରାମଦାସ ବୋଲି ଶୁଦ୍ର ଜଣେ କହେ ସେ ବେଦାନ୍ତ ସାର ।
ଶ୍ରୀମୁଖୁ ହକାରି ଶ୍ରୀଦେବ ତାହାଙ୍କୁ ତତ୍ତ୍ୱକୁ କାଟୁ ପଚାରୁ ।
ପାଞ୍ଚ ସାତଜଣ ବୈଷ୍ଣବ ମିଳଣ ଗତ ଆଗତ କହନ୍ତି ।
ସହି ନ ପାରଣ ବ୍ରାହ୍ମଣ ଖୁଣ୍ଟିଆ ରାଜାଙ୍କୁ ଗୁଳି ଦିଅନ୍ତି ।
ଏକଦିନେ ଶୋଧ କରଣ ରାଜନ ସଖା ପଞ୍ଚକ ଯେ ଥାଣି ।
ଏମନ୍ତ ସମୟେ ମିଳିଗଲେ ଆସି ଷୋରଣ୍ଡି ହି ନୃପମଣି ।
ପରୀକ୍ଷା ପଡ଼ିଲା ରାଜନ ଜାଣିଲା ବିପ୍ରଙ୍କ ଖଣ୍ଡିଲା ଠାଣ ।
ପାମର ଅଚ୍ୟୁତ ପାଦପଦ୍ମେ ସେବା ପ୍ରଭୁଙ୍କ ଆଜ୍ଞା ପ୍ରମାଣ ।

ପଞ୍ଚଶାଖାଙ୍କ ପରୀକ୍ଷା ରାଜା ପ୍ରତାପରୁଦ୍ରଦେବଙ୍କ ଦ୍ୱାରା ହୋଇଥିବା ବିଷୟ ଗୁପ୍ତଗୀତା, ଶୂନ୍ୟସଂହିତା, ଦାର୍ଢ୍ୟତାଭକ୍ତି ପ୍ରଭୃତି ଗ୍ରନ୍ଥମାନଙ୍କରେ ଲିଖିତ ଅଛି । ସେମାନଙ୍କର ପରୀକ୍ଷା ଏକ କାଳରେ ବା ବର୍ଷେ ଦୁଇ ବର୍ଷ ମଧ୍ୟରେ ହୋଇଥିବା ମଧ୍ୟ ସମ୍ଭବପର ନୁହେଁ । ରଥେ “ବଳରାମ ଦାସ ଓ ବ୍ରହ୍ମାଣ୍ଡ ଭୂଗୋଳ” ଶୀର୍ଷକ ପ୍ରବନ୍ଧରେ ଲେଖିଅଛନ୍ତି ଯେ “ଯେଉଁ ସମୟରେ ବଳରାମଙ୍କ ବେଦାନ୍ତ ଜ୍ଞାନ ପରୀକ୍ଷା ହୋଇଥିଲା ସେହି ସମୟରେ ଶୂନ୍ୟ ପୂଜକ ଅନ୍ୟତମ ସଖା ଅଚ୍ୟୁତାନନ୍ଦଙ୍କ ଶୂନ୍ୟ ଭଜନ ଓ ଯୋଗ ସାଧନର ପରୀକ୍ଷା ମଧ୍ୟ ହୋଇଥିଲା” । ଏ ଉକ୍ତି ସମୀଚୀନ ବହି ପ୍ରତୀତ ହେଉନାହିଁ । କାରଣ ପ୍ରତାପରୁଦ୍ର ନରପତିଙ୍କ ସପ୍ତଦଶ ଅଙ୍କରେ ବଳରାମ ଦାସଙ୍କ ପରୀକ୍ଷା ହୋଇଥିବା ବଳରାମ ଦାସ କୃତ ବେଦାନ୍ତସାର ଗୁପ୍ତଗୀତାର ପ୍ରଥମ ଅଧ୍ୟାୟରେ ଲିଖିତ ଅଛି ।

ରୁଦ୍ର ଅଂଶରେ ଗଜପତି । ପ୍ରତାପ ରୁଦ୍ର ଯେ ନୃପତି ।
ତାହାର ସପ୍ତଦଶ ଅଙ୍କ । ମକର ମାସ ଶୁକ୍ଳପକ୍ଷ ।
ଶ୍ରୀ ଏକାଦଶୀ ଗୁରୁବାର । ମୁକତି ମଣ୍ଡପ ମଧ୍ୟର ।

କିପ୍ରେ ଯେ ଜପ ସୁତ ସାରେ । କସିଲେ ବେଦାନ୍ତ ବିଗ୍ରହ ।
+ + + + + +
ତୁ ସୋମନାଥ ଶୁଦ୍ରସୁତ । ତୁ କହୁ ବେଦାନ୍ତ ଚରିତ ।
ତୁ ଶୁଦ୍ର ମୂଢ଼ ହୀନ ଜନ । ତୁ କହୁ ବେଦାନ୍ତ ବିଧାନ ।

ହଣ୍ଟର ସାହେବଙ୍କ ମତରେ ପ୍ରତାପରୁଦ୍ରଦେବ ୧୫୦୪ ଖ୍ରୀଷ୍ଟାବ୍ଦରେ ସିଂହାସନ ଆରୋହଣ କରିଥିଲେ । ତାହାଙ୍କ ଉକ୍ତ କାଳ ୧୫୧୭ ଖ୍ରୀଷ୍ଟାବ୍ଦରେ ପଡ଼ୁଅଛି । ହଣ୍ଟର ସାହେବଙ୍କ ଗଣନା ଠିକ ନୁହେଁ । କାରଣ କପିଳେନ୍ଦ୍ରଦେବଙ୍କ ଚଳନ୍ତ ଅଙ୍କ ଗଣନାନୁସାରେ ପ୍ରତାପରୁଦ୍ର ୧୪୯୬ ବା ୧୪୯୭ ସାଲରେ ସିଂହାସନ ଆରୋହଣ କରିବା ସମ୍ଭବପର । ଉତ୍କଳ ଇତିହାସ ଲେଖକ ୬/ କୃପାସିନ୍ଧୁ ମିଶ୍ର ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱ କାଳ ୧୪୯୫ ଠାରୁ ୧୫୩୨ ସାଲ ପର୍ଯ୍ୟନ୍ତ ନିର୍ଣ୍ଣୟ କରିଅଛନ୍ତି । ତାଙ୍କ ରାଜତ୍ୱ କାଳ ସଠିକ ନିର୍ଣ୍ଣୟ କରି କହିବା ସହଜ କଥା ନୁହେଁ । ଆମ୍ଭେମାନେ ଯେତେଦୂର ଅନୁମାନ କରୁଁ ଯେ ସେ ୧୪୯୬ ବା ୯୭ ସାଲରୁ ୧୫୩୨ ବା ୩୩ ସାଲ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଏହି ଗଣନା ଅନୁସାରେ ୧୫୦୯ ବା ୧୫୧୦ ସାଲରେ ପ୍ରତାପରୁଦ୍ରଙ୍କ ସପ୍ତଦଶ ଅଙ୍କ ପଡ଼ୁଅଛି । ସେହି ସମୟକୁ ଅଚ୍ୟୁତାନନ୍ଦ ଜନ୍ମଲାଭ କରି ନ ଥିଲେ । ହଣ୍ଟର ଗଣନା ଗ୍ରହଣ କରିବାର କଥା ନୁହେଁ । ସେ ଅନୁସାରେ ୧୫୧୭ ସାଲରେ ଅଚ୍ୟୁତାନନ୍ଦଙ୍କ କେବଳ ୫ବର୍ଷ କି ୬ ବର୍ଷ ବୟସ ହୋଇଥିବ । ତାହାଙ୍କ ପରି ବା ବାଳକ ରାଜା ପ୍ରତାପରୁଦ୍ରଙ୍କ ସପ୍ତଦଶ ଅଙ୍କରେ ପରୀକ୍ଷା ନିମନ୍ତେ ଉପସ୍ଥିତ ହୋଇଥିଲେ ।

ଅଚ୍ୟୁତାନନ୍ଦଙ୍କ ଜନ୍ମକାଳନିର୍ଣ୍ଣୟ, ସନାତନ ଗୋସ୍ୱାମିଙ୍କ ଠାରୁ ନାମଗ୍ରହଣ ପ୍ରଭୃତି ଇତି ପୂର୍ବେ ସବିସ୍ତର ବିଚାର ହୋଇଅଛି । ଏ ସମସ୍ତ ଦୃଷ୍ଟିରେ ପଞ୍ଚଶାଖାଙ୍କର ଏକ ସମୟରେ ପରୀକ୍ଷା ହେବା ସମ୍ଭବପର ନୁହେଁ । ସପ୍ତଦଶ ଅଙ୍କ ସ୍ଥାନରେ ସପ୍ତତ୍ରିଂଶ ଅଙ୍କ ପାଠ କଲେ ପରୀକ୍ଷାର ସମକାଳତ୍ୱ ସମ୍ଭବପର

ହୋଇପାରେ କିନ୍ତୁ ସେପରି ପାଠ କରିବାର କୌଣସି ପ୍ରମାଣ ନାହିଁ । ବଳରାମ ଦାସ ପ୍ରଭୃତିଙ୍କ ପରୀକ୍ଷାବିଷୟକ ଶୂନ୍ୟସଂହିତାର ଉପରୋକ୍ତ ଉଦ୍ଧୃତାଂଶ ପ୍ରକ୍ଷିପ୍ତରୂପେ ଗୃହୀତ ହୋଇପାରେ କାରଣ ସ୍ଥଳବିଶେଷର ପୋଥିମାନଙ୍କରେ ଏ ପାଠ ନାହିଁ ଓ ଦତ୍ତପ୍ରେସ ଦ୍ୱାରା ମୁଦ୍ରିତ ଶୂନ୍ୟସଂହିତାରେ ମଧ୍ୟ ନାହିଁ । ଶ୍ରୀ ମଣିଲାଲ ମହାରଣାଙ୍କଦ୍ୱାରା କଲିକତାର ଉତ୍କଳ ଯନ୍ତ୍ରାଳୟରୁ ଓ ଅରୁଣୋଦୟ ଯନ୍ତ୍ରାଳୟରୁ ପ୍ରକାଶିତ ଶୂନ୍ୟସଂହିତା ଦ୍ୱୟରେ ଏ ପାଠ ସନ୍ନିବେଶିତ ଅଛି । ପ୍ରକ୍ଷିପ୍ତ ରୂପେ ଗ୍ରହଣ ନ କରି ଅଚ୍ୟୁତାନନ୍ଦଙ୍କ ପଦରୂପେ ଗ୍ରହଣ କଲେ ଆମ୍ଭମାନଙ୍କୁ ଏହି ସ୍ଥିର ସିଦ୍ଧାନ୍ତରେ ଉପନୀତ ହେବାକୁ ହେଉଅଛି ଯେ ସେ ସମୟରେ କେବଳ ବଳରାମଙ୍କ ପରୀକ୍ଷା ହୋଇଥିଲା । ଅଚ୍ୟୁତାନନ୍ଦଙ୍କର ପରୀକ୍ଷା ହୋଇ ନ ଥିଲା । କେବଳ ଗୌଣଭାବରେ "ଶୂଦ୍ରବୈଷ୍ଣବମାନେ" "ସଖାପଞ୍ଚକ" ଲିଖିତ ହେବା ଆମ୍ଭମାନଙ୍କର ବିଶ୍ୱାସ ।

ଏହିପରି କାଳଭ୍ରମ ବା ପ୍ରମାଦର ଆଉ ଗୋଟିଏ ଉଦାହରଣ ଆମ୍ଭେମାନେ ଶୂନ୍ୟସଂହିତାର ଦ୍ୱିତୀୟ ଅଧ୍ୟାୟରେ ପ୍ରାପ୍ତହୋଇଅଛୁଁ ।

" ଭ୍ରମି ନୀଳାଚଳକୁ ସେ କଲେକ ଗମନ
ସଙ୍ଗତେ ଘେନିଣ ସେ ଯେ ପଞ୍ଚ ମହାଜନ ।
ରୂପ ସନାତନ ସଙ୍ଗେ ଶ୍ରୀଜୀବ ଗୋସାଇଁ ।
ଗୋପାଳ ଭଟ୍ଟ ଯେ ରଘୁନାଥ ଦାସ କହି ।

ଜୀବଗୋସ୍ୱାମିଙ୍କ ଚୈତନ୍ୟଚନ୍ଦ୍ରଙ୍କ ସଙ୍ଗରେ ନୀଳାଚଳକୁ ଆସିବା ବିଷୟ ସମ୍ପୂର୍ଣ୍ଣ ଭ୍ରମାତ୍ମକ । ଯେଉଁ ୧୫୩୩ ସାଲରେ ଚୈତନ୍ୟଚନ୍ଦ୍ରଙ୍କ ତିରୋଭାବ ହୋଇଥିଲା ଜୀବଗୋସ୍ୱାମୀ ସେହି ୧୫୩୩ ସାଲରେ ଜନ୍ମପରିଗ୍ରହ କରିଥିଲେ । ଉପରୋକ୍ତ ଶୂନ୍ୟସଂହିତାର ଉକ୍ତିକୁ ଆମ୍ଭେମାନେ ସାକ୍ଷାତ୍‌ଦ୍ରଷ୍ଟା ଅଚ୍ୟୁତାନନ୍ଦଙ୍କ ଲେଖନୀପ୍ରସୂତ ବୋଲି କହି ନ ପାରୁଁ । ଏ ପଦଦ୍ୱୟ ସମସ୍ତ ମୁଦ୍ରିତ ଗ୍ରନ୍ଥମାନଙ୍କରେ ଓ ଅସ୍ମଦ୍ଦୃଷ୍ଟ କେତେକ ତାଳପତ୍ର

ପୋଥିରେ ଥିବାସତ୍ତ୍ୱେ ପ୍ରମାଣର ଅଭାବରେ ମଧ୍ୟ ଏହାକୁ ଆମ୍ଭେମାନେ ବାଧ୍ୟ ହୋଇ ପ୍ରକ୍ଷିପ୍ତରୂପେ ଅନୁମାନ କରୁଅଛୁଁ ।

ଅଥବା ଅଚ୍ୟୁତାନନ୍ଦ ଗୋସ୍ୱାମୀ ଶୂନ୍ୟସଂହିତା ଗ୍ରନ୍ଥକୁ ଚୈତନ୍ୟଚନ୍ଦ୍ରଙ୍କ ତିରୋଧାନର ଅନେକ ବର୍ଷପରେ ଅର୍ଥାତ୍ ବ ୪୦।୪୫ ର୍ଷ ପରେ ରଚନା କରିଥିବାରୁ ସନାତନ, ରୂପ, ଗୋପାଳ, ରଘୁନାଥ ଦାସଙ୍କ ସହ ଜୀବଗୋସ୍ୱାମିଙ୍କ ନାମ କ୍ରମବଶତଃ ଉଲ୍ଲେଖ କରିଅଛନ୍ତି । ଅଚ୍ୟୁତାନନ୍ଦଙ୍କ ଆୟୁକାଳ ୧୦୮ ବର୍ଷ; ତାହା ଆମ୍ଭେମାନେ ଅନେକ କାରଣ ବଶରୁ ଅନୁମାନ କରିଅଛୁଁ । ସେ ଚୈତନ୍ୟଚନ୍ଦ୍ରଙ୍କ ତିରୋଭାବପରେ ପ୍ରାୟ ବ ୮୬।୮୭ ର୍ଷ ଜୀବନଯାତ୍ରା ନର୍ବାହ କରିଥିଲେ । ମହାପୁରୁଷଙ୍କ ସଂହିତାମାନଙ୍କ ମଧ୍ୟରେ ଶୂନ୍ୟସଂହିତା ଅତି ଉତ୍କୃଷ୍ଟ ।
ଏହିଗ୍ରନ୍ଥ ତାଙ୍କର ପ୍ରବୀଣ ବୟସରେ ଲେଖା ହେବା ସମ୍ଭବପର । ଶୂନ୍ୟସଂହିତା ତାଙ୍କ ୭୦।୭୫ ବର୍ଷ ବୟଃକାଳରେ ଲିଖିତ ହୋଇଥିଲେ ଉପରୋକ୍ତ ସଂଶୟ ଦୂରୀଭୂତ ହେବାର ଅବକାଶ ଅଛି । କାରଣ ସେ ସମୟକୁ ଜୀବଗୋସ୍ୱାମିଙ୍କର ବୟସ ପ୍ରାୟ ୪୦।୪୫ବର୍ଷ ହୋଇଥିବ । ତହୁଁ ସେ କାଳକୁ ଜୀବଙ୍କ ନାମ ଓ ଗ୍ରନ୍ଥାଦି ପ୍ରସିଦ୍ଧିଲାଭ କରିଥିବ ଓ ସେ ମଧ୍ୟ ଗୋସ୍ୱାମୀରୂପେ ଗୃହୀତ ହୋଇଥିବେ । ସନାତନ, ରୂପ, ରଘୁନାଥ ଓ ଅନ୍ୟାନ୍ୟ ଅଧିକାଂଶ ବୈଷ୍ଣବମାନେ ପୁରୀ କ୍ଷେତ୍ରରେ ପ୍ରାୟ ୨।୩ ବର୍ଷ ଅବସ୍ଥାନ କରି ଚୈତନ୍ୟଚନ୍ଦ୍ରଙ୍କ ଅନୁଜ୍ଞାମତେ ବୃନ୍ଦାବନରେ ସେମାନଙ୍କ ଅବଶିଷ୍ଟକାଳ ଅତିବାହିତ କରିଥିବା ଗୌଡୀୟ ବୈଷ୍ଣବ ଗ୍ରନ୍ଥମାନଙ୍କରୁ ପ୍ରକାଶ ପାଏ । ଯେ ସମୟରେ ଅଚ୍ୟୁତାନନ୍ଦଙ୍କ ନାମକରଣ ହୋଇଥିଲା ସେ ସମୟରେ ସନାତନ, ରୂପପ୍ରଭୃତି ଗୋସ୍ୱାମିମାନେ ପୁରୀଧାମରେ ଚୈତନ୍ୟଚନ୍ଦ୍ରଙ୍କ ସହ ଅବସ୍ଥାନ କରୁଥିଲେ । ସେ ସମୟରେ ତାଙ୍କ ବୟସ ୬ କି ୭; ତହୁଁ ତାଙ୍କ ମନରେ ଗୋସ୍ୱାମିମାନଙ୍କ ବିଷୟରେ ସଠିକ ଧାରଣା ରହିବା ସମ୍ଭବପର ବୋଧ ହେଉନାହିଁ । ଆହୁରି ମଧ୍ୟ ପ୍ରଶ୍ନ ଉଠିପାରେ ଯେ କି ଅଚ୍ୟୁତାନନ୍ଦ

ବୃନ୍ଦାବନରେ ଅବସ୍ଥିତ କଲା ସମୟରେ ଜୀବଗୋସ୍ୱାମିଙ୍କୁ ଓ ଅନ୍ୟାନ୍ୟ ଗୋସ୍ୱାମିମାନଙ୍କ ସଙ୍ଗ ଦେଖି ନ ଥିବେ; ତେବେ ସେ କପରି ଏପରି ଭ୍ରମାତ୍ମକ ବିଷୟ ଲେଖିଲେ । ବୋଧହୁଏ ସେ ୪୦ । ୪୫ ବର୍ଷ ପରେ ସେ ବିଷୟ ସଠିକ ବିବରଣ ଦେବାରେ ଅପାରଗ ହୋଇଥିଲେ । ଆହୁରି ମଧ୍ୟ ଗୋଟିଏ କଥା ମନେ ରଖିବାକୁ ହେବ ଯେ ସେହି ଭକ୍ତମାନେ ଭାବଖେଳା ଥିଲେ । ଯେତେବେଳେ ସେମାନଙ୍କ ହୃଦୟ ଭାବରେ ପୂର୍ଣ୍ଣ ଥାଏ, ସେତେବେଳେ ସେମାନେ ଲୌକିକ ପାରଧିକ ଉନ୍ନତକଲେ ତ୍ରୁଟି ହୋଇ ବାହ୍ୟଜ୍ଞାନଶୂନ୍ୟପୂର୍ବକ ହରିପ୍ରେମର ଉନ୍ମାଦନାରେ ଉନ୍ମତ୍ତ ଥିବାର ସେମାନଙ୍କର ଏହି ବହିରଙ୍ଗ କଥା-ମାନଙ୍କରେ ଅନେକ ବିସଦୃଶ ଘଟିଯାଏ । ଭଗବତ୍ ଲୀଳା ନିତ୍ୟ, ଚୈତନ୍ୟଙ୍କ ଲୀଳା ନିତ୍ୟ; ତାହାଙ୍କ ପରିକର ନିତ୍ୟ, ଏ ଦୃଷ୍ଟିରେ ମଧ୍ୟ ସେମାନଙ୍କ ଦୃଷ୍ଟିରେ ସବୁ ନିତ୍ୟରୂପେ ପ୍ରତିଭାତ ହୁଏ । ବହୁଦିଗରୁ ଅନେକ କଥା କହି ଆମ୍ଭେମାନେ ମଧ୍ୟ ପଥଭ୍ରଷ୍ଟ ହୋଇ ପଡ଼ିଲୁ । ପାଠକମାନେ ଆମ୍ଭମାନଙ୍କର ଏହି ବାଚାଳତାକୁ କ୍ଷମା କରିବେ ।

ରାଜା ପ୍ରତାପରୁଦ୍ରଦେବ ପଞ୍ଚସ୍ୱାମିଙ୍କୁ ପରୀକ୍ଷା କରିଥିଲେ, ଏ ବିଷୟରେ ଅଣୁମାତ୍ର ସନ୍ଦେହ ନାହିଁ । ବଳରାମ ଦାସ ସ୍ୱପରୀକ୍ଷା ବିଷୟ ବେଦାନ୍ତସାର ଗୁପ୍ତଗୀତାରେ ସ୍ପଷ୍ଟରୂପେ ବର୍ଣ୍ଣନ କରିଅଛନ୍ତି । କୃପାସିନ୍ଧୁ ବଳରାମ ଜଡ଼ମୁଖରେ ବେଦାନ୍ତ କୁହାଇଥିଲେ । ବେଦାନ୍ତସାରଗୁପ୍ତଗୀତାରେ ପଞ୍ଚସଖାଙ୍କ ପରୀକ୍ଷାବିଷୟର ଉଲ୍ଲେଖ ନାହିଁ । ଏକ ସମୟରେ ପରୀକ୍ଷା ହୋଇଥିଲେ ଉକ୍ତ ଗ୍ରନ୍ଥରେ ତାର ବିବରଣ ବା ସୂଚନା ଦିଆ ହୋଇ ପାରିଥାଆନ୍ତା । ପଞ୍ଚସଖାଙ୍କର ସ୍ୱସ୍ୱରୂପତ୍ୱ ତଥା ଏକ ଧର୍ମଭାବନାର ପରମ୍ପରାରେ ପରିଚୟ ପୂର୍ବରୁ ବେଦାନ୍ତସାର ରଚିତ ହୋଇଅଛି । ପ୍ରତାପରୁଦ୍ର-ଚୈତନ୍ୟଦେବଙ୍କୁ ଗୁରୁ ଓ ବଳରାମ ଦାସଙ୍କୁ ପରମଗୁରୁରୂପେ ସ୍ୱୀକାର କରିବା ଉକ୍ତ ଗ୍ରନ୍ଥରେ ଲିଖିତ ଅଛି ।

"ଚୈତନ୍ୟ ଗୁରୁ ଯେ ମୋହୋର । ପରମଗୁରୁ ତୁମ୍ଭେ ମୋର ।"

ଗୌଡୀୟ ବୈଷ୍ଣବଲେଖକଙ୍କ ମତରେ ପ୍ରାୟ ୧୫୧୨ ବା ୧୫୧୩ ଖ୍ରୀଷ୍ଟାବ୍ଦରେ ଚୈତନ୍ୟଚନ୍ଦ୍ର ପ୍ରତାପରୁଦ୍ରଙ୍କ ପ୍ରତି କୃପା ପ୍ରଦର୍ଶନ କରିଥିଲେ । ବୋଧହୁଏ ସେ ସେହି ସମୟରେ ପ୍ରତାପରାଜାଙ୍କୁ ମନ୍ତ୍ରଶିକ୍ଷା ଦେଇଥିଲେ । ତାର କେତେକ ବର୍ଷ ପରେ ବଳରାମ ଦାସ ରାଜାଙ୍କୁ ମନ୍ତ୍ର ଶିକ୍ଷା ଦେବା ସମ୍ଭବପର । ଦିବାକର ଦାସ ଜଗନ୍ନାଥଚରିତାମୃତରେ ଲେଖିଅଛନ୍ତି ଯେ ଚୈତନ୍ୟଚନ୍ଦ୍ର ପ୍ରତାପରୁଦ୍ରଙ୍କ ପ୍ରତି କୃପାକରି ଅତିବଡ଼ ଜଗନ୍ନାଥଦାସଙ୍କୁ ନାମତତ୍ତ୍ୱ କହିବାକୁ ଆଦେଶ କରିଥିଲେ । ପ୍ରତାପରାଜା ଜଗନ୍ନାଥଦାସଙ୍କୁ ଗୁରୁରୂପେ ଗ୍ରହଣ କରିଥିଲେ । ଉପରୋକ୍ତ ଉକ୍ତିଦ୍ୱୟରୁ ସ୍ପଷ୍ଟ ପ୍ରତିପନ୍ନ ହୁଏ ଯେ ଉଭୟ ପ୍ରତାପରାଜାଙ୍କ ଦ୍ୱାରା ଗୁରୁତୁଲ୍ୟ ପୂଜିତ ହୋଇଥିଲେ । ପଞ୍ଚସଖା ଚୈତନ୍ୟଚନ୍ଦ୍ରଙ୍କୁ ଗୁରୁରୂପେ ସ୍ୱୀକାର କରିଅଛନ୍ତି । ପଞ୍ଚସଖାଙ୍କ ମଧ୍ୟରେ ବଳରାମ ଜ୍ୟେଷ୍ଠ, ପ୍ରଥମ ଓ ପ୍ରଧାନ ଥିଲେ । ସେ ଜଗନ୍ନାଥ ଦାସଙ୍କୁ ଦୀକ୍ଷା ପ୍ରଦାନ କରିଥିଲେ ଏହା ଜଗନ୍ନାଥ ଚରିତାମୃତରେ ଓ ନିତ୍ୟଗୁପ୍ତମଣିରେ ସ୍ପଷ୍ଟରୂପେ ଲିଖିତ ଅଛି । ଜଗନ୍ନାଥ ଦାସଙ୍କ ପରୀକ୍ଷା ଯେତେଦୂର ଅନୁମିତ ହୁଏ, ଚୈତନ୍ୟ-ଚନ୍ଦ୍ରଙ୍କ ତିରୋଭାବ ପରେ ହୋଇଅଛି । ଏ ବିଷୟ ଜଗନ୍ନାଥ ଚରିତାମୃତର ୭ ମ ଓ ୧୧ ଶ ଅଧ୍ୟାୟର ଉକ୍ତିଦ୍ୱାରା ସମର୍ଥିତ ହେଉଅଛି ।

•

"ଏମନ୍ତ ଭାବ ଶ୍ରୀଚୈତନ୍ୟ । ଶ୍ରୀଜଗନ୍ନାଥଙ୍କ ଅଙ୍ଗେ ଲୀନ । ୨୪୭ ।
ଗୋପନ ହୋଇଲେ ସ୍ୱଦେହେ । ଦେଖି କାହାର ଦୃଷ୍ଟି ନୋହେ ॥
ନ ଦେଖି ଶ୍ରୀଚୈତନ୍ୟରୂପ । ସର୍ବେ ମନରେ ଦୁଃଖ ତାପ । ୨୫୨ ।
ରାଜା ହୋଇଲେ ମଉନ ଛନ୍ନ । ହେ ପ୍ରଭୁ ହେଲ ଅନ୍ତର୍ଦ୍ଧାନ । ୨୫୩

୭ ମ ଅଧ୍ୟାୟ ।

ବୋଲନ୍ତି ନମୋ ନମୋ ବାଣୀ । ଜୟ ତୁ ଅଠବଡ଼ ସ୍ୱାମୀ । ୬୨ ।
ଯାହାକୁ ଚୈତନ୍ୟ ଗୋସାଇଁ । ଅଠବଡ଼ରେ ଆଜ୍ଞା ହୋଇ । ୬୩ ।
ପୂର୍ବେ ଚୈତନ୍ୟ ଛନ୍ତି କହି । ମନ୍ତ୍ରଗଜ ବୁଝିବା ପାଇଁ । ୧୪୧ ।

ଜଗନ୍ନାଥ ଦାସ ପ୍ରେମଭକ୍ତିର ପରୀକ୍ଷା ଦେଇଥିଲେ ।
ସେ ପ୍ରେମ ଭକ୍ତି ବଳରାମ ଦାସଙ୍କ ଉକ୍ତିରେ
"ଆମ୍ଭାକୁ ସ୍ତିରୀ ବେଶ କର । ଶ୍ରୀ ରାଧା ଅଙ୍ଗରେ ବିହର ।
କୃଷ୍ଣେ ଆସ୍ୱାଦ ରସ ଦେଇ ! ଏହାକୁ ପ୍ରେମଭକ୍ତି କହି ।
ତେବେ ପାଇବୁ ଭବରାଶି । କୋଟିଲେ ପଶି ନ ପାରଇ ।
ପୁରୁଷ ଅଙ୍ଗେ ନ ଲଭନ୍ତି । ଏମନ୍ତ ବେଦତନ୍ତ୍ର ସ୍ଥିତି ।

୨୪ ଅଧ୍ୟାୟ ବେଦାନ୍ତସାର ଗୁପ୍ତଗୀତା

ଜଗନ୍ନାଥ ଦାସ ନିଜଠାରେ ସ୍ତ୍ରୀତ୍ୱର ପରିଚୟ ଦେଇଥିଲେ ।
ଜଗନ୍ନାଥଚରିତାମୃତ ୧୧ଶ ଅଧ୍ୟାୟ ଦ୍ରଷ୍ଟବ୍ୟ :—

ଚୈତନ୍ୟଚନ୍ଦ୍ରଙ୍କ ଦେହତ୍ୟାଗ ବିଷୟରେ ନାନାମୁନି ନାନା ମତ ସ୍ଥାପନ କରିଅଛନ୍ତି । ଆମ୍ଭେମାନେ ବର୍ତ୍ତମାନ ସପ୍ରମାଣ ନିର୍ଦ୍ଦେଶ କରୁଅଛୁଁ ଯେ ସେ ଜଗନ୍ନାଥଙ୍କ ବିଗ୍ରହରେ ଲୀନ ହୋଇଥିଲେ । ପୂର୍ବୋକ୍ତ ଦିବାକରଦାସଙ୍କ ଉକ୍ତି "ଶ୍ରୀ ଜଗନ୍ନାଥଙ୍କ ଅଙ୍ଗେଲୀନ" ସହିତ ଅଚ୍ୟୁତାନନ୍ଦଙ୍କ ଶୂନ୍ୟସଂହିତାର ଉକ୍ତିର "ଚୈତନ୍ୟଠାକୁର ମହା ନୃତ୍ୟକାର ରାଧା ରାଧା ଧ୍ୱନି କଲେ । ଜଗନ୍ନାଥ ମହାପ୍ରଭୁ ଶ୍ରୀଅଙ୍ଗରେ ବିଦ୍ୟୁପ୍ରାୟ ମିଶିଗଲେ" ଐକ୍ୟଅଛି । ପୁନଶ୍ଚ ହରିଲାଲ ଚଟ୍ଟୋପାଧ୍ୟାୟ ସ୍ୱପ୍ରଣୀତ ବୈଷ୍ଣବ ଇତିହାସରେ ଲେଖିଅଛନ୍ତି "ଶ୍ରୀ ଗୌରାଙ୍ଗଦେବ" ୧୫୩୩ ଖ୍ରୀଷ୍ଟାବ୍ଦେ ୧୪୫୫ ଶକେ ୪୮ ବତ୍ସର ବୟସେ ଶ୍ରୀ ଶ୍ରୀ ଜଗନ୍ନାଥ ଦେବେର ମନ୍ଦିରେ ଅନ୍ତର୍ଦ୍ଧାନ ହଇଲେନ । କେହ କେହ ବଲେନ ମହାପ୍ରଭୁ ଗଦାଧରେର ବିଗ୍ରହ ଗୋପୀନାଥେର ଗୃହେ ଅନ୍ତର୍ହିତ ହନ୍" କେହ କେହ କହନ୍ତି ଯେ ଗୌରାଙ୍ଗ ସମୁଦ୍ରରେ ଦେହ-

ତ୍ୟାଗ କରିଥିଲେ । ପରୋକ୍ତ ମତ ଦ୍ୱୟକୁ ସମୀଚୀନ ମନେ ନ କରି ପୂର୍ବୋକ୍ତ ଜଗନ୍ନାଥଙ୍କ ବିଗ୍ରହରେ ବା ଜଗନ୍ନାଥଙ୍କ ମନ୍ଦିରରେ ଅନ୍ତର୍ଦ୍ଧାନ ବିଷୟ ସତ୍ୟରୂପେ ଗ୍ରହଣ କରିବାରେ ବାଧ ହେଲୁଁ ॥ ବର୍ତ୍ତମାନ ଏହି ପ୍ରସଙ୍ଗରେ ଆଉ ଗୋଟିଏ ବିଷୟରେ ଘୋରତର ସନ୍ଦେହ ଜାତ ହେବାର ଆଶଙ୍କା କରି ଆମ୍ଭେମାନେ ତାହା ଯଥାଶକ୍ତି ଦୂର କରିବାରେ ପ୍ରବୃତ୍ତ ହେଲୁଁ ॥ ପ୍ରତାପରୁଦ୍ର-ଦେବ ୧୫୩୨ ଖ୍ରୀଷ୍ଟାବ୍ଦରେ ଦେହ ତ୍ୟାଗ କରିବା ବିଷୟ ହଣ୍ଟର, ପ୍ୟାରୀଚରଣ ଓ କୃପାସିନ୍ଧୁ ଲେଖି ଅଛନ୍ତି । ଯଦି ତାହା ସତ୍ୟ ହୁଏ ତେବେ ଆମ୍ଭେମାନେ ଅନେକ ଉତ୍କଳୀୟ ଓ ଗୌଡ଼ୀୟ ବୈଷ୍ଣବଙ୍କ ଲେଖାକୁ ଭ୍ରମାଦପୂର୍ଣ୍ଣ ବୋଲି ଗ୍ରହଣ କରିବୁଁ ॥ ଆମ୍ଭମାନଙ୍କ ମତରେ ପୂର୍ବୋକ୍ତ ଐତିହାସିକମାନେ ସମୟ ନିରୂପଣରେ ଏକ ବିଷମ ଭ୍ରମ କରିଅଛନ୍ତି । କାରଣ ଚୈତନ୍ୟଚନ୍ଦ୍ରଙ୍କ ସମସାମୟିକ ଓ ତତ୍ପରବର୍ତ୍ତୀ ଯୁଗର ବଙ୍ଗ ଓ ଉତ୍କଳର ଭକ୍ତମାନଙ୍କ ଉକ୍ତିର ଏହା ସମ୍ପୂର୍ଣ୍ଣ ବିରୋଧୀ ॥

କବିକର୍ଣ୍ଣପୂରବିରଚିତ ଚୈତନ୍ୟଚନ୍ଦ୍ରୋଦୟ ନାଟକର ପ୍ରସ୍ତାବନାରେ ଲିଖିତଅଛି ॥ "ଭଗବତ **କୃଷ୍ଣଚୈତନ୍ୟ ତନ୍ୟମାନତରୋଭାବ**ଭାବିତମାନସବୁଷାପରୁଷାପଦିଶାବିଶାଦି ଶାତଶାତବୈମୁଖ୍ୟେନ ମୁଖ୍ୟେନ ହେତୁନା ତଥାବିଧୋଽପି ପରମାନନ୍ଦେ ମାନଂ ଦେହମପିନ କୁର୍ବତାଽବତାଽବନଲ୍ଭତାଽନଭୃତା ଭଲାଷେଣ **ଗଜପତିନା ପ୍ରତାପରୁଦ୍ରେଣାଦିଷ୍ଟୋଽସ୍ମି** ॥

" ଚୈତନ୍ୟଚନ୍ଦ୍ରଙ୍କ ତିରୋଭାବରେ ଦୁଃଖିତ ହୋଇ ଗଜପତି ପ୍ରତାପରୁଦ୍ର ଚୈତନ୍ୟଙ୍କ ଚରିତ ବର୍ଣ୍ଣନ କରିବାକୁ ମୋତେ ଆଦେଶ ଦେଲେ" ॥ ଜଗନ୍ନାଥ ଚରିତାମୃତ ଓ ଶୂନ୍ୟସଂହିତାର ପୂର୍ବୋକ୍ତ ଉଦ୍ଧୃତାଂଶଦ୍ୱୟ ଦ୍ୱାରା ମଧ୍ୟ ପ୍ରତାପରୁଦ୍ରଙ୍କ ଉପସ୍ଥିତିରେ ଚୈତନ୍ୟଙ୍କ ତିରୋଭାବ ବିଷୟ ପ୍ରମାଣିତ ହେଉଅଛି । ଜଗନ୍ନାଥଚରିତାମୃତ-କାର ସପ୍ତଦଶ ଶତାବ୍ଦୀର ଆଦିକାଳର ଲୋକଥିଲେ ।

ଉପରୋକ୍ତ ପ୍ରମାଣମାନ ସମକ୍ଷରେ ଆମ୍ଭେମାନେ ଉକ୍ତ ଐତିହାସିକ-ମାନଙ୍କ ଉକ୍ତିରେ ବିଶ୍ୱାସସ୍ଥାପନ ନ କରି ପ୍ରତାପଦେବଙ୍କ ରାଜତ୍ୱ କାଳ ୧୪୯୭ ଖ୍ରୀଷ୍ଟାବ୍ଦରୁ ୧୫୪୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ନିର୍ଦ୍ଧାରଣ କରୁଅଛୁଁ । ଆମ୍ଭମାନଙ୍କର ଏ ସମୟନିରୂପଣ ଗୌଡ଼ୀୟ ବୈଷ୍ଣବ ଲେଖକଙ୍କ ଦ୍ୱାରା ମଧ୍ୟ ସମର୍ଥିତ ହୋଇଅଛି । ଜଗନ୍ନାଥ ଦାସଙ୍କ ପରୀକ୍ଷା ଚୈତନ୍ୟ ଚନ୍ଦ୍ରଙ୍କ ତିରୋଭାବ ପରେ ପ୍ରାୟ ୧୫୩୫ ସାଲରେ ହୋଇଥିବା ସମ୍ଭବପର । ତାହାର ଦୁଇତିନିବର୍ଷ ମଧ୍ୟରେ ଅଚ୍ୟୁତଙ୍କ ପରୀକ୍ଷା ହୋଇଥିବ । ଏକଦା ବା ଏକ ସମୟରେ ପରୀକ୍ଷା ହୋଇ ଥିଲେ ଦିବାକର ଦାସ ଜଗନ୍ନାଥ ଚରିତାମୃତରେ ତାହା ଉଲ୍ଲେଖ କରିଥାନ୍ତେ । ଅନନ୍ତ ଯଶୋବନ୍ତଙ୍କ ପରୀକ୍ଷା ଅଚ୍ୟୁତଙ୍କ ପୂର୍ବେ ହୋଇଥିବା ସମ୍ଭବପର । କାରଣ ଅଚ୍ୟୁତ ସର୍ବକନିଷ୍ଠ ଥିଲେ । ଶିଶୁଅନନ୍ତ ଓ ଯଶୋବନ୍ତ ଜଗନ୍ନାଥଙ୍କଠାରୁ ବୟସରେ ନ୍ୟୂନ ଥିବା ଓ ଅଚ୍ୟୁତଙ୍କଠାରୁ ବୟସରେ ଅଧିକ ଥିବା କିମ୍ବଦନ୍ତୀରୁ ପ୍ରକାଶ ଥାଏ । ପଞ୍ଚସ୍ୱାମିଙ୍କ ପରୀକ୍ଷା ମଧ୍ୟରେ ଅଚ୍ୟୁତଙ୍କ ପରୀକ୍ଷା ଶେଷ ପରୀକ୍ଷା । ଏ ପରୀକ୍ଷା ସମୟରେ ଅନ୍ୟ ଚାରି ସଖା ବଳରାମ, ଜଗନ୍ନାଥ, ଅନନ୍ତ, ଯଶୋବନ୍ତ ଉପସ୍ଥିତ ଥିବା ସମ୍ଭବପର । ଅଚ୍ୟୁତାନନ୍ଦଙ୍କୁ ଶୂନ୍ୟ ଭଜନରେ ପରୀକ୍ଷା ଦେବାକୁ ହୋଇଥିଲା । ଏହା ଶୂନ୍ୟ ସଂହିତାର ନବମ ଅଧ୍ୟାୟରେ ବିଶଦରୂପେ ବର୍ଣ୍ଣିତ ହୋଇଅଛି ।

ପ୍ରତାପ ରୁଦ୍ର ଯେ କଟାକ୍ଷ କଲା । ଦେଉଳ ବାହୁଡ଼ି ଆକଟ ହେଲା ।
ବୋଇଲେ ଦାସେ ଶୁଣ ମୋଠାରୁ । ଭଜନ ମନ୍ତ୍ର କେବଣ ମନ୍ତ୍ରରୁ ।
ଅଜପା ନାମ କାମ ବୀଜମାନ । ଗାୟତ୍ରୀ ଚବିଶାକ୍ଷର ଭଜନ ।
କେଉଁ ମନ୍ତ୍ର ଗୋଟି ଇଷ୍ଟ ତୁମ୍ଭର । କହ ଦାସେ ଦେଖି ତତ୍ତ୍ୱବିଚାର

× × × ×

ବ୍ରାହ୍ମଣେ ଅତି ଚଳାଇ କହିଲେ । ରାଜନ ମନକୁ ଚଞ୍ଚଳ କଲେ ।

× × × ×

ଅନାମ ତଳେ ନାମକୁ ଦେଇଣ । କାମବୀଜ ଓମତକ ଲେଖିଣ ।

ପଞ୍ଚବର୍ଗ ବାର ମାଟା ଦେଇଣ । ଯନ୍ତରେ ଲେଖି କରିଲୁଁ ସ୍ଥାପନ ।
ଦେଖି ବ୍ରାହ୍ମଣେ ହେଲେ ଆଚମ୍ବିତ । ବୋଇଲେ ଦାସେ ଜାଣ ତତ୍ତ୍ୱଅର୍ଥ

+ + + +

କେଉଁ ଭଜନ ଅଟେ ଏ ନାମର । ତତ୍ତ୍ୱବୋଧ ଦାସେ କହ ନକର
ବହୁତ କଟାଳ ବ୍ରାହ୍ମଣେ କଲେ । ରାଜନ ଶ୍ରୀମୁଖରେ ପୁଣି କହିଲେ ।
ରାଜନ ବୋଇଲେ ଶୁଣ ହେ ଦାସେ । ଯନ୍ତ୍ର ସ୍ଥାପିଲ ମନ୍ତ୍ର କହ ତୋଷେ
କିରୂପେ ଏମନ୍ତ ଭଜନ କର । କହ ଦାସେ ଦେଖି ଏଥି ବିଗ୍ରହ ।
ପୁଣି ପୁଣି ରାଜା କଟାଳ କଲା । ଶୁଣି ମୋ ମନେ ସଙ୍କଟ ପଡ଼ିଲା ।
ବୋଇଲି ତୁମ୍ଭେ ଶୁଣ ହେ ରାଜନ । ମନ୍ତ୍ର ନିରାକାର ଶୂନ୍ୟ ଭଜନ ।
ଆସନ ଶୁଦ୍ଧି ଅଙ୍ଗନ୍ୟାସ ନାହିଁ । ସ୍ନାନଭଙ୍ଗ ବିଗବନ୍ଧନ ନାହିଁ ॥
ଶୂନ୍ୟରେ ବସି ଭଜନ କରିବ । କାଳକୁ ଜାଣି ଗୋଲକରେ ଠାବ

× × × ×

ବ୍ରାହ୍ମଣେ ଶୁଣି ଚଳଣ ଉଠିଲେ । ଦାସେ କି କହୁଅଛ ବୋଲି ବୋଇଲେ
ବୋଇଲେ ଯେ ଦାସେ ଶୂନ୍ୟଭଜନ । ରାଜନେ ଏହା କରନ୍ତୁ ପ୍ରଚ୍ଛିନ୍ନ
ଶୂନ୍ୟଭଜନ କିରୂପେ କରିବେ । ଦାସେ ପରୀକ୍ଷା ଏହିଠାରେ ଦେବେ
ଏକ ବ୍ରାହ୍ମଣେ ବୋଇଲେକ ହସି । କୂପ କି ବାମ୍ଫି ଯାଏଣ ନଅସି ।

× × × ×

ବାଙ୍କି ମୁହାଣି ଶୂନ୍ୟ ବାମ୍ଫିଠାରେ । ଭଜନ କର ଦାସ ଏହିଠାରେ ॥
ଦେଖନ୍ତୁ ଯେତେକ ଏ ଦ୍ୱିଜବର । ପ୍ରତ୍ୟକ୍ଷେ ପରୀକ୍ଷା ଆମ୍ଭ ଗୋଚର ॥
ଶୁଣି ମୋ ମନରେ ଲାଗିଲା ଭୟ । ଅନନ୍ତ ମୂରତି କଲି ମୁଁ ଲୟ ॥
ଦ୍ୱାତ୍ରିଂଶ ଅକ୍ଷର ହୃଦେ ସ୍ଥାପିଲି । ନାଭିପଦରେ ବସି ଧ୍ୟାନ ମୁଁ କଲି ।
ଊର୍ଦ୍ଧ୍ୱମୁଖ କରି କଲି ମୁଁ ଲୟ । ନିରାକାର ରୂପ କଲିଁ ଧ୍ୟେୟ ॥
ପ୍ରାଣ ଊର୍ଦ୍ଧ୍ୱେ କରି ଶୂନ୍ୟେ ରହିଲି । ପରମହଂସେ ଚକ୍ଷୁବୁଜାଇଲି ॥
ଦେଖିଣ ରାଜନ ହେଲେ ଚକିତ । ବ୍ରାହ୍ମଣେ ଦେଖିହୋଇଲେ ସ୍ତମ୍ଭିତ ।
ଯେତେକ ଆଚମ୍ବିତ ହୋଇ ରହିଲେ । ନୃପତି ପ୍ରଦକ୍ଷିଣ କେ ଅବା କଲେ
ରାଜନ ଦେଖିଣ ପରତେ ଗଲେ । ଦାସେ ଆସ ବୋଲି ଗୁହାରି କହିଲେ

କୋଳେ ଧରଣ କଲେ ଆଲିଙ୍ଗନ । କହି ଘୋଷିଲେ ଆଶ୍ୱାସ ବଚନ
ଶୁଣ ଆମ୍ଭ ବାଣୀ ଅଚ୍ୟୁତ ଦାସ । ବାଙ୍କି ମୂହାଣେ କର ଯା ନିବାସ ॥

ଉପରୋକ୍ତ ପଂକ୍ତିମାନଙ୍କରୁ ସ୍ପଷ୍ଟ ପ୍ରତିପନ୍ନ ହୁଏ ଯେ ଅଚ୍ୟୁତାନନ୍ଦ ଜଣେ ପ୍ରଧାନ ଯୋଗୀ ପୁରୁଷ ଥିଲେ । ଶୂନ୍ୟ ନିରାକାର ଭଜନରେ ଅତି ପ୍ରବୀଣ ଥିଲେ । ଆମ୍ଭେମାନେ ଶୂନ୍ୟ-ଚନ୍ଦ୍ରାମଣିର ମୁଖବନ୍ଧରେ ଦର୍ଶାଇଅଛୁଁ ଯେ ଏହି ଶୂନ୍ୟଶବ୍ଦ କି କି ସ୍ତର ଦେଇ ବର୍ତ୍ତମାନ କି ଅର୍ଥରେ ବ୍ୟବହୃତ ହେଉଅଛି । ଏହି ଶୂନ୍ୟଶବ୍ଦ ସ୍ଥୂଳରେ କହିବାକୁ ଗଲେ ମସ୍ତକଦେଶସ୍ଥ ଶୂନ୍ୟାକାର ସ୍ଥାନ । (ଷଟ୍ଚକ୍ର ନିରୂପଣରେ ସହସ୍ରାର ପଦ୍ମର ବିବରଣ ଦ୍ରଷ୍ଟବ୍ୟ ) ଓ "ତଦୂର୍ଦ୍ଧ୍ୱେ ଶଙ୍ଖିନ୍ୟା ନିବସତି ଶିଖରେ ଶୂନ୍ୟଦେଶେ ପ୍ରକାଶମ୍" ସେହି ସ୍ଥାନରେ ବିସର୍ଗଶକ୍ତି ଅଛି । ଏହି ଶକ୍ତିର ଅଧୋଦେଶରେ ସହସ୍ରାର ପଦ୍ମ । ଏହି ପଦ୍ମର ମଧ୍ୟରେ ନିଷ୍କଳଙ୍କ ଚନ୍ଦ୍ର, ସେଠାରେ ତ୍ରିକୋଣ ଯନ୍ତ୍ର ଓ ସେହି ଯନ୍ତ୍ର ମଧ୍ୟରେ ଆତ୍ମାର ପରମୋତ୍କୃଷ୍ଟ ଶୂନ୍ୟସ୍ଥଳ ବିରାଜିତ । ଏହା ଶୈବଙ୍କ ଦ୍ୱାରା ଶିବସ୍ଥାନ; ବୈଷ୍ଣବଙ୍କ ଦ୍ୱାରା ହରି ସ୍ଥାନ; ଶାକ୍ତ ମାନଙ୍କର ଦ୍ୱାରା ଶକ୍ତି ସ୍ଥାନ ରୂପେ ଗୃହୀତ ଇତ୍ୟାଦି ଇତ୍ୟାଦି ।

ପଞ୍ଚସଖାଙ୍କ ଗ୍ରନ୍ଥାଦି ଅଧ୍ୟୟନ କଲେ ସ୍ପଷ୍ଟ ଜଣାଯାଏ ଯେ ସେମାନେ ଜଣେ ଜଣେ ପ୍ରଧାନ ଯୋଗୀ ଥିଲେ । ସେ ସମୟରେ ଉତ୍କଳରେ ଅନେକ ସାଧକ ଓ ଯୋଗୀ ପୁରୁଷ ପ୍ରାଚୀ କୂଳରେ ବାସ କରୁଥିଲେ ।

ଦଣ୍ଡକା ଅରଣ୍ୟ ପୂର୍ବ ପ୍ରାଚୀ ନଦୀକୂଳ ।
ତପୀ ଯତି ସନ୍ନ୍ୟାସିଙ୍କ ସେ ଠାବରେ ମେଳ ।

+ + +

ବୋଲନ୍ତି ହେ ମାଧବ ଏ ଗୁମ୍ଫା ଗୋରେଶ୍ୱର
ଯୋଗାରୂଢ଼େ ସାଧନ୍ତି ଏଠାରେ ନିରାଧାର ।
ଏଠାରେ ମଲ୍ଲିକାନାଥ ଗୁମ୍ଫା କରିଥାନ୍ତି ।
ଗୁରୁ ଆଜ୍ଞା ଘେନିଣ ସେ ଯୋଗେ ଆସେହନ୍ତି ।

ବାରଙ୍ଗ—ଆଶ୍ରମ ଏ ଯେ ଭରଦ୍ୱାଜ ତାଳ ।
ଯାଇଣ ଆସି ସାଧନ୍ତି ବାର ଯେ ଆଙ୍ଗୁଳ ।
ଲୋଇ ଦାସ ମଠକର ଥାନ୍ତି ଯେ ଏଥିରେ ।
ଲକ୍ଷ୍ୟ କରିଥାନ୍ତି ଧ୍ୟାନ ନିରାକାରଠାରେ ।
ଗାରଫିଦ୍ଧ ବିଦଗ୍ଧ ଆଜ୍ଞା କରିଥାନ୍ତି ।
ବିଷମ ସନ୍ଧି ଯେ କାଳାନ୍ତକ ସେ ସାଧନ୍ତି ।
ଇଚ୍ଛାରେ ଯାଆନ୍ତି ତପୀ ଶତେ ପୂର୍ଣ କ୍ଷଣେ ।
ଶ୍ରୀକୃଷ୍ଣେ କଯୋଗୀ ଯେ ଆସନ୍ତି ପ୍ରତିଦିନେ ।
ବାଲଗାଁ ଦାସଙ୍କ ମଠ ମାଧୁରୀ ହୋ ଦେଖ ।
ମନୁ ଏକ ହେଲ ବୋଲି ବୋଲନ୍ତି ଦାମ୍ଭିକ ।
ଯୋଗାରୂଢ଼େ ସାଧନ୍ତି ସେ ବ୍ରହ୍ମଜ୍ଞାନ ମୂଳ
ଆହାର କରନ୍ତି ମୁନ ବୃକ୍ଷର ବକଳ ।

ଗୋରେଖ, ମଲ୍ଲିକାନାଥ, ବାରଙ୍ଗ, ଲୋଇ ଦାସ, ଗାରଫିଦ୍ଧ, ବାଲଗାଁ ଦାସ ଏମାନେ ସମସ୍ତେ ଯୋଗୀ ଓ ସାଧକଥିଲେ । ମନ୍ତ୍ର, ଯନ୍ତ୍ର ଓ ତନ୍ତ୍ରରେ ପ୍ରବୀଣ ଥିଲେ । ସେମାନେ ସମସ୍ତେ ନିରାକାର ଉପାସକ ଥିଲେ । ସେମାନଙ୍କ ମତରେ ବୌଦ୍ଧଭାବ ଅଲ୍ପାଧିକ ପରିମାଣରେ ପରିଦୃଷ୍ଟ ହୁଏ । ପଞ୍ଚସଖାଙ୍କ ତୁଲ୍ୟ ଜଣେ ବିଶିଷ୍ଟପୁରୁଷ ୧୬ ଶତାବ୍ଦିରେ ଉତ୍କଳରେଆବିର୍ଭୂତ ହୋଇ ଅକ୍ଷୟକୀର୍ତ୍ତି ରଖି ଦେଇ ଯାଇଅଛନ୍ତି । ଦୁଃଖର କଥା ସେ ମହାପୁରୁଷ ଆଜ ସର୍ବଜନ ପରିଚିତ ନୁହନ୍ତି । ତାଙ୍କର ନାମ ଚୈତନ୍ୟ ଦାସ; ସେ ବର୍ଣ୍ଣରେ ମାଳାକାର ଥିଲେ । ତାଙ୍କର ଲୀଳାସ୍ଥାନ ବଡ଼ମୂଳ ତାଙ୍କର ଦୁଇଖଣ୍ଡ ଉପାଦେୟ ଗ୍ରନ୍ଥ ଆମ୍ଭମାନଙ୍କ ହସ୍ତଗତ ହୋଇଅଛି । ସେ ଜଣେ ମଧ୍ୟ ପଞ୍ଚସଖାଙ୍କ ତୁଲ୍ୟ ବୌଦ୍ଧ ବୈଷ୍ଣବ ଥିଲେ । ତାଙ୍କର ନିର୍ଗୁଣ ମହାତ୍ମ୍ୟ ଓ ବିଷ୍ଣୁଗର୍ଭ ପୁରାଣ ପାଠକଲେ ଜଣାଯାଏ ସେ ଜଣେ ପ୍ରଧାନ ପୁରୁଷଥିଲେ । ତାଙ୍କର ବିଷ୍ଣୁଗର୍ଭ ପୁରାଣରେ ବୌଦ୍ଧଧର୍ମର ମହାଯାନ ଶାଖାର ଅନେକ

ତତ୍ତ୍ୱ ବୈଷ୍ଣବଧର୍ମର ପରିଚ୍ଛଦ ଅନ୍ତରାଳରେ ପରିସ୍ଫୁଟ ପାଏ । ସେ ଏହି ପଞ୍ଚସଖାଙ୍କର ପରେ ଖ୍ରିବ ସମ୍ଭବତଃ ୧୭ଶ ଶତାବ୍ଦୀର ଶେଷ ଭାଗରେ ଉତ୍କଳର ମୁଖମଣ୍ଡନ କରିଥିଲେ । ସେ ମଧ୍ୟ ଜଣେ ଯୋଗୀ ଓ ସାଧକ ଥିଲେ । ଏହି ମହାତ୍ମାଙ୍କ ବିଷୟ ତାଙ୍କ ପ୍ରଣୀତ ନିର୍ଗୁଣ ମାହାତ୍ମ୍ୟର ମୁଖବନ୍ଧରେ ସୁବିସ୍ତର ଆଲୋଚନା କରିବୁଁ । ହା ! ଆଜି ସେହି ସାଧକର ଦେଶ, ସେହି ଯୋଗିର ଦେଶ, ସେହି ଜ୍ଞାନିର ଦେଶ, ସେହି ପ୍ରେମିକର ଦେଶ ଅକର୍ମଣ୍ୟ, ନିଷ୍ଠାଶୂନ୍ୟ ଅବିଦ୍ୟାମୟ ତଥା ସଙ୍କୀର୍ଣ୍ଣର ଦେଶରେ ପରିଣତ ହେଲା ! ସେ ଉଦ୍ଭିଦ କାଳରେ ପଞ୍ଚସଖା ପ୍ରଧାନ ଥିଲେ । କାରଣ ସେମାନେ ସେମାନଙ୍କର ବୈଷ୍ଣବତତ୍ତ୍ୱ ହେତୁ ସର୍ବଜନ ପୂଜିତ ହୋଇଥିଲେ ଓ ଅଧିକନ୍ତୁ ଜଗଦ୍‌ଗୁରୁ ଚୈତନ୍ୟଚନ୍ଦ୍ରଙ୍କ ଦ୍ୱାରା ସ୍ୱପରିକର ରୂପେ ଗୃହୀତ ହୋଇଥିଲେ । ଉପରୋକ୍ତ ସିଦ୍ଧ ଯୋଗୀ ଗୋରେଖ ମଲ୍ଲିକା ପ୍ରଭୃତିଙ୍କ ବିଷୟ ବିଶିଷ୍ଟ ପ୍ରବନ୍ଧମାନଙ୍କରେ ବିଚାର କରିବାର ମାନସ ରଖିଲୁଁ । ଏ ସ୍ଥଳରେ ଗାରସିଂହଙ୍କ ବିଷୟରେ ପଦେ ଅଧେ କହିବାକୁ ଉଚିତ ମନେକରୁଁ । ଗାରସିଂହ ବର୍ଣ୍ଣରେ ରାଜକୁଳୋଦ୍ଭବ କ୍ଷତ୍ରିୟ ଥିଲେ । ସେ ନାଗାନ୍ତୀ ଯୋଗାନ୍ତୀ ବେଦାନ୍ତୀ ସିଦ୍ଧାନ୍ତୀ ଥିଲେହେଁ ନାଗାନ୍ତୀ ବିଦ୍ୟାରେ ବିଶେଷ ପ୍ରବୀଣ ଥିଲେ । ତାଙ୍କର ଆଜ୍ଞା ଅଦ୍ଭୁତ ଥିଲା । ସେ ଇଚ୍ଛାରେ ଶତ ଶତ କୋଶ ଶୂନ୍ୟରେ ବିଚରଣ କରି ପାରୁଥିଲେ । ତତ୍‌କୃତ ମନ୍ତ୍ର, ସପ୍ତାଙ୍ଗ, ଭଜନ, ଆଜ୍ଞା ପ୍ରଭୃତି ଲିଖିତ ପୋଥିମାନ ସ୍ଥାନେ ସ୍ଥାନେ ବିଦ୍ୟମାନ ଅଛି । ଗାରସିଂହ ଅଚ୍ୟୁତାନନ୍ଦାଦିଙ୍କ ସମସାମୟିକ ଥିବା ଶୂନ୍ୟ ସଂହିତାରୁ ପ୍ରକାଶ ପାଏ । "ଏମନ୍ତ ସମୟେ ମିଳିଗଲେ ଆସି ଗାରସିଂହ ନୃପମଣି ।" ୧ ମ ଅଧ୍ୟାୟ—ଗାରସିଂହ ଯୋଗ ଓ ଲୟର ଅଧିକାରୀ ଥିଲେ । ଭୋଗ ଓ ଲୀଳାକୁ ଉପେକ୍ଷା କରିଥିଲେ । ସେ ଜଣେ ଯୋଗସିଦ୍ଧ ପୁରୁଷ ଥିଲେ ଓ ସେ ଆଜ୍ଞା ବଳରେ ଅନେକ ଅଦ୍ଭୁତ କ୍ରିୟା କଳାପ ପ୍ରଦର୍ଶନ କରୁଥିଲେ । ମାଧୁରୀ ଗାରସିଂହଙ୍କର ବିଦ୍ୟା-

ବଳରେ ସ୍ୱଗୁରୁ ମାଧ୍ୱୀ ଗୋସାଇଁଙ୍କୁ ଜାଳି ଦେଉଥିଲେ । ତାହା ଶୂନ୍ୟସଂହିତା ୧୧ ଅଧ୍ୟାୟରେ ଲିଖିତ ଅଛି ।

“ଗାରସିଂହ ବିଦ୍ୟାକୁ ପରୀକ୍ଷା ଚାହିଁକଲେ,
+ + +
ଲେଖିଲେକ ମନ୍ତ୍ର ମୂର୍ତ୍ତି ରୂପେ ଦେଲେ ଢାଳି,
ସଂକଳ୍ପ କରଣ ଅଗ୍ନିକୁଣ୍ଡେ ଦେଲେ ଜାଳି ।
ଜଳିଲେ ଶରୀର ତପୀ ହୋଇଲେ ବ୍ୟାକୁଳ,
ଆକୁଳେ ନୟନୁଁ ବହି ପଡ଼େ ଅଶ୍ରୁଜଳ ।

ଗାରସିଂହ ପଞ୍ଚସଖାଙ୍କ ତୁଲ୍ୟ ବୈଷ୍ଣବ ନ ଥିବାରୁ ଓ ଯୋଗ ଓ ଲୀଳାରେ ବିଳାସୀ ନ ଥିବାରୁ ସେ ଏମାନଙ୍କ ସଙ୍ଗରେ ଗୃହୀତ ହୋଇ ନାହାନ୍ତି । ଏହି ପଞ୍ଚସଖା ଶୂନ୍ୟ ନିରାକାର ଭଜନ ତଥା ଭଗବାନଙ୍କ ସାକାରୋପାସନା ସ୍ୱୀକାର କରିଅଛନ୍ତି । ତାଙ୍କ ପରସ୍ପର ମଧ୍ୟରେ ସାମାନ୍ୟ ପୃଥକତ୍ୱସତ୍ତ୍ୱେ ଆମ୍ଭେମାନେ ଏହି ପଞ୍ଚ-ସଖାଙ୍କୁ ଏକମତାବଲମ୍ବୀରୂପେ ଗ୍ରହଣ କରୁଅଛୁଁ । କାରଣ ପ୍ରତ୍ୟେକଙ୍କ ଅଣାକ୍ଷରମନ୍ତ୍ରବିଷୟକ ଭଜନ ପାଠକଲେ ସ୍ପଷ୍ଟ ପ୍ରତିପନ୍ନ ହୁଏ ଯେପରିକି ସେମାନେ ଏକ ଗୁରୁଙ୍କର ଶିଷ୍ୟ ଏବଂ ସେମାନଙ୍କର ମତ ଏକ । ଆଶ୍ଚର୍ଯ୍ୟର କଥା ନାନକଙ୍କ ସେହି ମନ୍ତ୍ର ବିଷୟକ ଭଜନ ସହିତ ଏମାନଙ୍କ ଭଜନର ସାମ୍ୟ ଅଛି । ବର୍ତ୍ତମାନ ବିଚାର୍ଯ୍ୟ ଏହି ଶୂନ୍ୟ ନିରାକାର ଉପାସନା ବିଷୟରେ ଅଚ୍ୟୁତାନନ୍ଦ-ଙ୍କର ଗୁରୁ କିଏ ଓ ସେହି ଗୁରୁ ପ୍ରଣାଳୀ କେଉଁ ଶ୍ରେଣୀର ଅନ୍ତର୍ଭୁକ୍ତ । ପୂର୍ବେ କଥିତ ହୋଇଅଛି ଯେ ଅଚ୍ୟୁତ ନାମକରଣର ୧୦ ବର୍ଷ ୧୦ ମାସ ଅନ୍ତରେ ଜ୍ୟୋତିବିନ୍ଦୁ ପୁରୁଷଙ୍କୁ ସ୍ୱପ୍ନରେ ଦେଖିଥିଲେ ଓ ତାହାଙ୍କର ଦୟାରେ ସେ ସମସ୍ତ ବିଷୟ ଅଧିଗତ ହୋଇଥିଲେ ଓ ଅଣାକ୍ଷର ମନ୍ତ୍ର ପ୍ରାପ୍ତ ହୋଇଥିଲେ ॥

ବ୍ରହ୍ମାନନ୍ଦ ଯହୁଁ ଅବିଦ୍ୟା ଅବ୍ୟକ୍ତ ବିଦ୍ୟାନନ୍ଦ ତହୁଁ ଜାଣ,
ତାଙ୍କ ଗୁରୁନାମ ସଚ୍ଚିଦାନନ୍ଦଟି ସ୍ୱୟଂ ଅନାଦି ନିର୍ବାଣ ॥
× × ×

ପ୍ରସନ୍ନ ହୋଇଣ ପରମବ୍ରହ୍ମ ଯେ ଅଣାକ୍ଷର ମନ୍ତ୍ର ଦେଲେ ।
ଉପଦେଶ ଦେଇ ବ୍ରହ୍ମାଣ୍ଡଠାକୁର ଅନ୍ତର୍ଦ୍ଧାନ ହୋଇଗଲେ ।

ଶୂନ୍ୟସଂହିତା ୧ମ ଅଧ୍ୟାୟ ॥

ଏହି ବିଷୟ ଅଣାକାର ସଂହିତାରେ ମଧ୍ୟ ପ୍ରତିଧ୍ୱନିତ ହୋଇଅଛି ।
"ଆପଣେ ଅନାଦି ଅବ୍ୟକତ ବ୍ରହ୍ମ ଶ୍ରୀଗୁରୁରୂପେଣ ଆସି ।
ରୂପବେଶ ତାଙ୍କ ଅଖଣ୍ଡିତ କେଶ ଦିଶନ୍ତି ବ୍ରହ୍ମତପସ୍ୱୀ ।
ପଶ୍ଚିମବଟହିଁ ପାରୁଷେଣ ବସି ଶ୍ରୀକୃଷ୍ଣ ନାମ କହିଲେ ।
ଶ୍ରୀବିଦ୍ୟାନନ୍ଦ ବୋଲିଣ ସେହୁ ନାମ ବହ୍ନି ବୋଲିଣ ବୋଇଲେ ।
ଅଣଅକ୍ଷର ଉପଦେଶ ଦେଇଣ ଅନ୍ତର୍ଦ୍ଧାନ ହୋଇଗଲେ ॥"

ଅଣାକାର ସଂହିତା—

ଅଣାକାରସଂହିତା ଉକ୍ତିରୁ ଜଣାଯାଏ ଯେ ଅଚ୍ୟୁତ ସ୍ୱଗୁରୁଙ୍କୁ ରକ୍ତମାଂସ ଶରୀରରେ ସ୍ୱଚକ୍ଷୁରେ ଦେଖୁଥିଲେ । ସେ ଯାହା ହେଉ ତାଙ୍କର ଏହି ଦିବ୍ୟ ପୁରୁଷଙ୍କର ସାକ୍ଷାତ ହୋଇଥିଲା । କେତେକଙ୍କ ମତରେ ସେ ସ୍ୱୟଂ ଜଗନ୍ନାଥ, ଆଉ କେତେକ ତାଙ୍କୁ ଚୈତନ୍ୟଚନ୍ଦ୍ର ବୋଲି କହନ୍ତି । ଚୈତନ୍ୟଚନ୍ଦ୍ରଙ୍କଠାରୁ ଅଣାକ୍ଷର ମନ୍ତ୍ର ଅଚ୍ୟୁତାନନ୍ଦ ପ୍ରାପ୍ତ ହୋଇଥିଲେ; ଏହା ଗୁରୁଭକ୍ତି ଗୀତାରେ ଲିଖିତ ଅଛି । ଶୂନ୍ୟସଂହିତାର ଉଦ୍ଧୃତାଂଶରୁ ନିର୍ବାଣ ଶବ୍ଦଟି ବୌଦ୍ଧମାନଙ୍କର ଚରମାବସ୍ଥା ପ୍ରକାଶ କରେ । ସେହି ନିର୍ବାଣ, ଅନାଦି ଓ ସଚ୍ଚିଦାନନ୍ଦ ଅଟନ୍ତି । ବୈଷ୍ଣବ ଓ ବେଦାନ୍ତଙ୍କ ମତରେ ଭଗବାନ ଓ ବ୍ରହ୍ମସତ୍ତ୍ୱମୟ ଚିନ୍ମୟ ଓ ଆନନ୍ଦମୟ:—

ଈଶ୍ୱର ପରମ କୃଷ୍ଣ ସଚ୍ଚିଦାନନ୍ଦ ବିଗ୍ରହ । ଅନାଦି ରାଦି ଗୋବିନ୍ଦ ସର୍ବକାରଣ-କାରଣମ୍—ବ୍ରହ୍ମସଂହିତାରୁ ସ୍ପଷ୍ଟ ପ୍ରତୀତ ହୁଏ । ଅଚ୍ୟୁତାନନ୍ଦଙ୍କ କାଳକୁ ବୌଦ୍ଧ ଓ ବୈଷ୍ଣବ ଧର୍ମ ପୂର୍ଣ୍ଣ ଭାବରେ ସମ୍ମିଶ୍ରିତ ହୋଇ ଏକ ବୌଦ୍ଧ ଓ ବୈଷ୍ଣବ ଧର୍ମ ଉତ୍କଳରେ ପ୍ରଚଳିତ ହୋଇଅଛି ।

ପୂର୍ବୋକ୍ତ ନାଗାନ୍ତୀ ବେଦାନ୍ତୀ ଯୋଗାନ୍ତୀ ବିଦ୍ୟା ବିଷୟ ମଧ୍ୟ ଏ ସ୍ଥଳରେ ବିଚାର୍ଯ୍ୟ । ଏହି ବିଦ୍ୟାମାନ କପରି ଜନସାଧାରଣରେ ପ୍ରଚାରିତ ହେଲା ଏହା ମଧ୍ୟ ଜିଜ୍ଞାସ୍ୟ । ବୌଦ୍ଧ ନାଗାର୍ଜୁନଙ୍କ ପ୍ରବର୍ତ୍ତିତ ମାଧ୍ୟମିକ ଦର୍ଶନ ନାଗାନ୍ତକ ଆଖ୍ୟା; ବୌଦ୍ଧ ଅସଙ୍ଗ ପ୍ରଭୃତିଙ୍କ ଦ୍ୱାରା ପ୍ରବର୍ତ୍ତିତ ଯୋଗାଚାର ଯୋଗାନ୍ତକ ଆଖ୍ୟା ଓ ବୌଦ୍ଧ ସୌତ୍ରାନ୍ତିକ ଶାଖା ବେଦାନ୍ତକ ଆଖ୍ୟା ପ୍ରାପ୍ତ ହେବା ଖୁବ୍ ସମ୍ଭବପର । କାରଣ ବୌଦ୍ଧମାନେ କୌଣସି ବିଷୟ ଗୋପନ କରୁ ନଥିଲେ ଓ ସେମାନଙ୍କ ହେତୁ ବେଦାନ୍ତରମତ, ଯୋଗରମତ-ସବୁ ଜନସାଧାରଣରେ ଖ୍ୟାତ ହେଲା । ଆମ୍ଭେମାନେ ଶ୍ରୁତଚନ୍ଦ୍ରାମଣିର ମୁଖବନ୍ଧରେ ବିଚାର କରିଅଛୁଁ ଯେ ବୌଦ୍ଧମାନେ ବୌଦ୍ଧଧର୍ମକୁ ଲୋକଗ୍ରାହ୍ୟ କରିବା ଉଦ୍ଦେଶ୍ୟରେ ବେଦାନ୍ତ, ଯୋଗାଦିର ମତକୁ ସ୍ୱଧର୍ମ-ପଦ୍ଧତିରେ ଗ୍ରହଣ କରିଥିଲେ । ଗୋରକ୍ଷ ନାଥ, ସାରସିଦ୍ଧ, ମଲ୍ଲିକାନାଥ, ଲୋହି ଦାସ, ବାଉଳ ପ୍ରଭୃତି ଉପରୋକ୍ତ ବୌଦ୍ଧଶାଖା ନାଗାନ୍ତକ, ଯୋଗାଚାର ଓ ସୌତ୍ରାନ୍ତିକମାନଙ୍କର ଅନ୍ତର୍ଭୁକ୍ତଥିଲେ ସେମାନଙ୍କର ଶିଷ୍ୟ ପ୍ରଶିଷ୍ୟାଦି ମଧ୍ୟ ସ୍ୱଗୁରୁଧର୍ମ ଅବଲମ୍ବନ କରି ପ୍ରାଚୀକୂଳରେ ବାସ କରୁଥିଲେ । କାଳକ୍ରମରେ ଉକ୍ତ ବୌଦ୍ଧଶାଖା-ମାନ ମଧ୍ୟ ପୁନଃ ପୁନଃ ବୈଷ୍ଣବ ପ୍ରଭାବରେ ପ୍ରଭାବିତ ହୋଇଥିବ ଏଥିରେ ସନ୍ଦେହର ଅବକାଶ ନାହିଁ ।

ଶୂନ୍ୟସଂହିତାର ଏକାଦଶ ଅଧ୍ୟାୟରେ ମାଧୁରୀ ଓ ମାଥୁରୀ ଉପାଖ୍ୟାନରୁ ସ୍ପଷ୍ଟ ପ୍ରତିପନ୍ନ ହୁଏ ଯେ 'ଉତ୍ତର-କୋଶଳକୁଣ୍ଡୀନଗ୍ର' ସୀମାନ୍ତବର୍ତ୍ତୀ ଚନ୍ଦ୍ରୋପଳାକୂଳସ୍ଥ ଚନ୍ଦ୍ରେଶ୍ୱରୀ ଭଗବତୀଙ୍କ ପୀଠ-ସମୀପ ମହାରଣ୍ୟରେ ଅନେକ ଯୋଗୀ ଋଷି ବାସ କରୁଥିଲେ । ସେ ସ୍ଥଳ ସିଦ୍ଧପୀଠ ରୂପେ ସେ ସମୟରେ ପ୍ରସିଦ୍ଧି ଲାଭ କରିଥିଲା ଏବଂ ସେ ସ୍ଥଳକୁ ମଧ୍ୟ ଚୈତନ୍ୟଚନ୍ଦ୍ର ସ୍ୱମଣ୍ଡଳୀ ସହିତ ଗମନ କରିଥିଲେ ।

"ସେଠାରେ ଅନେକ ଭକ୍ତ ହୋଇଛନ୍ତି ମେଳ
ଆମ୍ଭେ ପାଞ୍ଚ ସଖା ସର୍ବେ କରୁଅଛୁଁ କେଳ ।
ବାର ସପ୍ତ ଭକ୍ତରେ ପ୍ରଧାନ ସନାତନ ।
ଆପେ ଶ୍ରୀଚୈତନ୍ୟ ପ୍ରଭୁ ବନେ ସ୍ୱୟଂବ୍ରହ୍ମ ॥"

ଏହି ଅରଣ୍ୟରେ ଯେଉଁ ଯୋଗୀ ଋଷି ବାସ କରୁଥିଲେ ସେମାନେ ଅଳ୍ପାଧିକ ପରିମାଣରେ ବୌଦ୍ଧମତ ପୋଷଣ କରୁଥିଲେ । ଏବଂ ଏହି ଅରଣ୍ୟ ନେମାଳର ଅଦୂରବର୍ତ୍ତୀ,—ପ୍ରାୟ ଦୁଇମାଇଲ ମଧ୍ୟରେ ଅବସ୍ଥିତ । ଅଚ୍ୟୁତାନନ୍ଦ ସନାତନଙ୍କ ଠାରୁ ନାମକରଣ ପ୍ରାପ୍ତହୋଇ "ଦଶବର୍ଷ ଦଶମାସ" ପର୍ଯ୍ୟନ୍ତ ସ୍ୱଗ୍ରାମ ନେମାଳରେ ବାସ କରିଥିଲେ । ଏହି ଦଶବର୍ଷ ଦଶମାସ ମଧ୍ୟରେ ତାଙ୍କର ସେହି ଯୋଗୀ ଋଷିମାନଙ୍କ ସହିତ ସାକ୍ଷାତ ହୋଇ ପାରିଥିବ । ସେମାନଙ୍କ ମୁଖରୁ ଅଲେଖ, ଅନାଦି, ଅଣାକାର ନିରଞ୍ଜନ ବିଷୟକ ଧର୍ମତତ୍ତ୍ୱ ଅନେକ ଶୁଣି ପାରିଥିବେ ଓ ବୁଦ୍ଧମୂର୍ତ୍ତି ଜଗନ୍ନାଥଙ୍କ ଉକ୍ତ ଅଲେଖ, ଅନାଦି, ଅଣାକାର, ନିରଞ୍ଜନଙ୍କ ଐକ୍ୟର ଆଭାସ ପାଇପାରିଥିବେ । ତତ୍ପରେ "ଦଶବର୍ଷ ଦଶମାସ" ଅନ୍ତରେ ବ୍ରହ୍ମାଣ୍ଡଠାକୁରଙ୍କ ତାଙ୍କୁ ସ୍ୱପ୍ନାଦେଶ । ଏହି ସ୍ୱପ୍ନାଦେଶପରେ ତାଙ୍କର ପୁରୀଧାମକୁ ଆଗମନ ଓ ଚୈତନ୍ୟଙ୍କ ଠାରୁ ଡୋରକୌପୁନୀ ଗ୍ରହଣ ଓ ତତ୍ପରେ ତୀର୍ଥ ପର୍ଯ୍ୟଟନ ଏବଂ ତୀର୍ଥଭ୍ରମଣରୁ ପ୍ରତ୍ୟାବର୍ତ୍ତନର ଦୁଇ ତିନି ବର୍ଷପରେ ଚୈତନ୍ୟଚନ୍ଦ୍ରଙ୍କର ତିରୋଭାବ । ତୀର୍ଥାଟନର ପ୍ରତ୍ୟାବର୍ତ୍ତନକାଳରୁ ତାଙ୍କର ଜଗନ୍ନାଥ ବଳରାମାଦିଙ୍କ ସହିତ ସାକ୍ଷାତ । ସେମାନେ ଅଣାକାର ତଥା ସାକାର ଉପାସକ ଥିଲେ । ସେମାନେ ମଧ୍ୟ ଅଣାକ୍ଷର ମନ୍ତ୍ରଜ୍ଞ ଓ ଶୂନ୍ୟ ଉପାସକ ଥିଲେ ତାହା ପୂର୍ବେ କଥିତ ହୋଇଅଛି । ଅଚ୍ୟୁତଙ୍କ ବାଲ୍ୟକାଳଲବ୍ଧଜ୍ଞାନ ଅଧୁନା ବଳରାମ. ଜଗନ୍ନାଥାଦିଙ୍କ ସଂସର୍ଗରେ ପୁନର୍ମାର୍ଜିତ ହୋଇ ଯାଇଥିଲା ଏବଂ ସେ ମଧ୍ୟ ପ୍ରାଚୀକୂଳର ଅରଣ୍ୟକୁ ଯାଇ ସେହି ନାଗାନ୍ତୀ, ଯୋଗାନ୍ତୀ, ବେଦାନ୍ତୀ,

ସିଦ୍ଧାନ୍ତଙ୍କ ସହ ସାକ୍ଷାତ କରୁଥିଲେ ଓ ସେମାନଙ୍କ ସହ ଧର୍ମ ବିଷୟକ କଥାମାନ ଆଲୋଚନା କରୁଥିଲେ । ଏହା ଶୂନ୍ୟସଂହିତା ଏକାଦଶ ଅଧ୍ୟାୟରେ ସୂଚିତ ହୋଇଅଛି । ପୁନଶ୍ଚ ଉକ୍ତ ଅଧ୍ୟାୟରେ ଲିଖିତ ଅଛି ଯେ ଯୋଗୀଋଷିମାନେ **ମନ୍ତ୍ରବୀଜହରଣ** କରିବାରୁ **ମନ ଯାନ ଚଳିଲା** ନାହିଁ । ତହୁଁ ଜଗନ୍ନାଥଙ୍କ ସେବା ନିଯୋଗକୁ ଭକ୍ତମାନେ ଯାଇ ପାରିଲେ ନାହିଁ । ଦର୍ଶନ ପରେ ଅଚ୍ୟୁତା-ନନ୍ଦାଦି ପ୍ରଭୁଙ୍କ ପାଖରେ ମିଳିଲେ । ପ୍ରଭୁ ଅଚ୍ୟୁତଙ୍କୁ ଦେଖି କହିଲେ ।

"ବୋଇଲେ ମୋ ପ୍ରାଣ ପଞ୍ଚସଖା କାହିଁ ଥିଲ
ନିଯୋଗ ନ ରୁଚେ ମୋତେ; ତୁମ୍ଭେତ ନଇଲ ।
ବୋଇଲେ ଅଚ୍ୟୁତ ତୁମ୍ଭେ ଶୁଣ ଆତ୍ମବାଣୀ
କଳିଯୁଗେ ବୌଦ୍ଧରୂପେ ବିଜେ କଲ ପୁଣି ।
କଳିଯୁଗେ ବୌଦ୍ଧରୂପେ ନିଜରୂପ ଗୋପ୍ୟ
ଏଣୁ ସେ ସକଳ ମୁନିମାନେ ଦେଲେ ଶାପ ।
ଆମ୍ଭେ ଏହା ଜାଣୁ ହୋ ଅଚ୍ୟୁତଦାସ ବାଇ
ଏଣୁକରି ପ୍ରକାଶିଲୁଁ ଏକକଳା ନେଇ ।
ଅଳପେ ନାମକୁ ଯାନ୍ତ୍ରେ ଭଣ୍ଡ କଲେ ତପୀ
ବେଳୁଁ ଜାଣି ନିରାକାର ମନ୍ତ୍ରଅଙ୍କୁ ସ୍ଥାପି ।
ତୁମ୍ଭେ ମୋର ପଞ୍ଚଆତ୍ମା ଅଟ ପଞ୍ଚଜଣ
ଅବତାର ଶ୍ରେଣୀ ଯେତେ; ତୁମ୍ଭପାଇଁ ପୁଣ ।
ନିରାକାର ମନ୍ତ୍ରେ ସବୁ ଦୁର୍ଗତି ହରିବ
ଆପଣେ ତରଣ ପରେ ତାର ତରାଇବ ।
ବୁଦ୍ଧମାତା ଆଦିଶକ୍ତି ସରସ୍ୱତୀଚନ୍ଦ୍ର କହି
ନିରାକାର ଭଜନେ ନିର୍ମଳ ଭକ୍ତି ପାଇ ।
ଏମନ୍ତ କହିଣ ଦେଲେ ମନ୍ତ୍ର ନିରାଧାର
ଆଜ୍ଞାଦେଲେ କଳିଯୁଗେ କର ଯା ପ୍ରଚାର ।

× × × × × ×

ଯାଅ ଅନନ୍ତ ଅଚ୍ୟୁତ ଯଶୋବନ୍ତ ଦାସ
ବଳରାମ ଜଗନ୍ନାଥ କର ଯା ପ୍ରକାଶ ।
ଆଜ୍ଞାପାଇ ଆମ୍ଭେ ପାଞ୍ଚଜଣ ଯେ ଅଇଲୁଁ
ମନଯାନ ଚଳାଇ ବନ୍ଧନ ପ୍ରବେଶିଲୁଁ ।
ଋଷୀ ତପୀ ସନ୍ୟାସୀ ନାମକ ଘାରହିନ୍ଦ
ଲୋହି ଦାସ ବାଉଳ କପିଳ ଯେତେ ସଙ୍ଗ ।
ସର୍ବମନ୍ତ୍ରାଇଣ ଯେ ବସିଲେ ସର୍ବେ ତପୀ
ପଚାରିଲେ ପ୍ରଭୁଙ୍କ କି ଆଜ୍ଞା ଛନ୍ତି ଥାପି ।
କହିଲ ମୁଁ ଶୂନ୍ୟମନ୍ତ୍ର ଯନ୍ତ୍ର କର ନ୍ୟାସ
ତପୀମାନେ ଜମ୍ଭୁ ଜମ୍ଭୁ କଲେ ଯେ ପ୍ରକାଶ । ଇତ୍ୟାଦି

ଅଚ୍ୟୁତାଦି ପଞ୍ଚସଖା ଶୂନ୍ୟମନ୍ତ୍ର ଓ ଯନ୍ତ୍ର ପୁନଶ୍ଚ ବୁଦ୍ଧରୂପୀ ଜଗନ୍ନାଥଙ୍କଠାରୁ ପ୍ରାପ୍ତ ହୋଇଥିଲେ ଓ ସେହି ଶିକ୍ଷାବଳରେ ପୁନର୍ବାର ସେମାନଙ୍କ ମନଯାନ ଚଳାଇବାକୁ ଲାଗିଲା । ଏହି ଶିକ୍ଷାବିଷୟ କଥା ତଥା ଆଦେଶବାଣୀ ପ୍ରାଚୀକୂଳସ୍ଥ ଋଷିମାନଙ୍କୁ କହିଥିଲେ ।

---

ଏହାର ଗୂଢ଼ ଅର୍ଥ ଏହା ହୋଇପାରେ ଯେ ଉତ୍କଳର ଉପରୋକ୍ତ ଯୋଗୀ ଋଷିମାନଙ୍କ ଓ ଅନ୍ୟାନ୍ୟ କେତେକଙ୍କ ବୌଦ୍ଧଭାବ ତଥା ଯୋଗ ଓ ବେଦାନ୍ତ ଜ୍ଞାନପ୍ରତି ବ୍ରାହ୍ମଣମଣ୍ଡଳୀ ଓ ରାଜା ପ୍ରତାପରୁଦ୍ରଦେବଙ୍କର ଖରଦୃଷ୍ଟି ପଡ଼ିବାରୁ ସେମାନେ ଜଗନ୍ନାଥ ଦର୍ଶନରୁ ବଞ୍ଚିତ ହୋଇଥିଲେ । ଦଣ୍ଡ ଭୟରେ ସେମାନେ ନିଜଧର୍ମକୁ ଗୋପନ କରୁଥିଲେ । ପ୍ରକାଶ୍ୟରେ ତାର ପ୍ରଚାରକ୍ରିୟା କରୁ ନ ଥିଲେ । ମନ ଯାନ କ ! ବୌଦ୍ଧମତ ମନ୍ତ୍ରଯାନର ଶକ୍ତି ହ୍ରାସହେଲା । ଏହି ପଞ୍ଚଶଖାଙ୍କପରେ ବୌଦ୍ଧମତ ଓ ବୈଷ୍ଣବ ଧର୍ମର ସମନ୍ୱୟ ହୋଇଥିବାରୁ ସେମାନେ ନିର୍ବାଧରେ ଜଗନ୍ନାଥଙ୍କ ମନ୍ଦିରରେ ପ୍ରବେଶଲାଭ କରିପାରୁଥିଲେ । ସେହି ସମୟରେ ଅଚ୍ୟୁତାନନ୍ଦଙ୍କ ସ୍ୱ ବୈଷ୍ଣବତ୍ୱସତ୍ତ୍ୱେ ପ୍ରତାପରାଜାଙ୍କ ସମକ୍ଷରେ ଶୂନ୍ୟଭଜନ ଓ ନିରାକାର ଭଜନର ପରୀକ୍ଷାଦେବାକୁ

ଆମ୍ଭମାନଙ୍କର ଦୃଢ଼ ବିଶ୍ୱାସ ଯେ ପୂର୍ବୋକ୍ତ ଘଟଣା କାଳରେ ଅଚ୍ୟୁତାନନ୍ଦଙ୍କୁ ପୂର୍ବକଥିତ ଶୂନ୍ୟଭଜନର ପରୀକ୍ଷା ଦେବାକୁ ହୋଇଥିଲା । ଏହି ପଞ୍ଚସଖା ନୀଳାଚଳସ୍ଥ ବୁଦ୍ଧରୂପୀ ଜଗନ୍ନାଥଙ୍କୁ ସେହି ନିରଙ୍କୁଶ ନିରାକାରପୁରୁଷ, ଅଲେଖ ନିରଞ୍ଜନରୂପେ ଦର୍ଶନ କରୁଥିଲେ ।

ତୁମ୍ଭ ଆମ୍ଭ ସଙ୍ଗ ବାବୁ ଅନ୍ତର ନୋହିବ
କଳିଯୁଗେ ବଉଧ ରୂପକୁ ଯେ ହୋଇବ, ଇତ୍ୟାଦି—ଶୂ ୧୦ ।

ମଥୁରାରୁ ଆସି ସେ ବ୍ରହ୍ମବାଣି ।
ବଉଦ୍ଧରୂପେ କଳରେ ପ୍ରକାଶି । ଶୂ ୧୭ ।

ଶ୍ରୀକୃଷ୍ଣଚରଣାମ୍ଭୋଜେ ବିଦେଶ ଶରଣଂ ଯଯୌ
ସଗୁଣଂ ନିର୍ଗୁଣଂ ବ୍ରହ୍ମ ଜ୍ୟୋତିରୂପଂ ସନାତନମ୍
ସାକାରଂ ଚ ନିରାକାରଂ ତେଜୋରୂପଂ ନମାମ୍ୟହମ୍

ବ୍ରହ୍ମବୈବର୍ତ୍ତ—କୃଷ୍ଣଜନ୍ମ ୫ଅଧ୍ୟାୟ ।

ଅଚ୍ୟୁତାନନ୍ଦ—କୃଷ୍ଣଲୀଳା କୀର୍ତ୍ତନରେ ଦିନଯାପନ କରୁଥିଲେ । ଯୋଗ ଭୋଗ ଲୟଲୀଳା ଏହି ଚତୁର୍ବିଧବୃତ୍ତିର ଉପଯୋଗିତା ପ୍ରତିପନ୍ନ ହେଲେ ଅଚ୍ୟୁତାନନ୍ଦଙ୍କ କୃଷ୍ଣଲୀଳା କୀର୍ତ୍ତନର ଅର୍ଥ-ସୁବୋଧ ହେବ । ନିଜର ଘଟକୁ (ଶରୀରକୁ) ଭଗବତ୍ ଉପାସନାର ଉପଯୋଗୀ କରାଇବାକୁ ହେଲେ ସାମାନ୍ୟ ଯୋଗଜ୍ଞାନ ଆଦୌ ଆବଶ୍ୟକ । ତନ୍ନିମିତ୍ତ ନିଶ୍ଚଳ ଚିତ୍ତରେ ସଂସାରରେ ଅନାସକ୍ତ ହୋଇ

---

ହୋଇଥିଲା । ସେ ସ୍ୱୀୟଜ୍ଞାନ ଓ ଭକ୍ତି ବଳରେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ଓ ସମସ୍ତଙ୍କର ବନ୍ଦନୀୟଭାଜନ ହେଲେ । ଏହି ନିରାକାର ଭଜନର ସଂସ୍ଥାପନା ହେବରୁ ପୁନର୍ବାର ତାହାର ମ..ମା ପ୍ରଚାର ହେବାକୁ ଲାଗିଲା । ଚୈତନ୍ୟଦେବ ମଧ୍ୟ ଏମାନଙ୍କୁ ଭେଦ-ଜ୍ଞାନ ଶୂନ୍ୟ, ଜଗନ୍ନାଥଙ୍କ ସେବକ ଓ ଜ୍ଞାନ ଏବଂ ଭକ୍ତି ଯୋଗର ଆଶ୍ରୟୀ ଦେଖି ସ୍ୱପରିକର ରୂପେ ଗ୍ରହଣ କରିଥିଲେ ।

ବିଷୟ ଭୋଗ କରିବା ସଂସାର ପକ୍ଷେ ପ୍ରୟୋଜନୀୟ । ଏପରି ବିଷୟ ଭୋଗରେ ଚିତ୍ତ ଅନାସକ୍ତହୋଇ କର୍ମଫଳ ପ୍ରତି ବୀତସ୍ପୃହ ହୁଏ ଏବଂ ଭଗବାନଙ୍କଠାରେ ଅନନ୍ୟବିଷ୍ଟ ହୁଏ । ତାହା ଲୟ ଅବସ୍ଥା ( ଟୀକାରେ ଦ୍ରଷ୍ଟବ୍ୟ ) ଲୟାନନ୍ତର ଭଗବତ୍ ଅନୁଭୂତିରେ, ଜ୍ୟୋତିଦର୍ଶନରେ ମନରେ ଅପୂର୍ବ ଆନନ୍ଦ ଜାତହୁଏ । ଆନନ୍ଦ ଆହ୍ଲାଦରେ ପରିଣତ ହୁଏ, ଆହ୍ଲାଦାବସ୍ଥାରୁ ପ୍ରେମର ଉଦ୍ରେକ ହୁଏ ଓ ସେହି ପ୍ରେମର ଉନ୍ମାଦନା ଭଗବତ୍‌ଲୀଳା ଅଗ୍ୟାନ ନିମିତ୍ତ ଚିତ୍ତକୁ ସର୍ବଦା ପ୍ରବର୍ତ୍ତିତ କରେ ।

ପ୍ରବୁଦ୍ଧେ ଜ୍ଞାନଭକ୍ତିଭ୍ୟା ମାତ୍ମନ୍ୟାନନ୍ଦ ଚିନ୍ମୟୀ । ଉଦେତ୍ୟାନୁ ତ୍ତମାଭକ୍ତିର୍ଭଗବତ୍ ପ୍ରେମ ଲକ୍ଷଣା । ବ୍ରହ୍ମସଂହିତା ୪୮ । ଜ୍ଞାନ ଓ ଭକ୍ତି ଦ୍ୱାରା ଆତ୍ମଜ୍ଞାନ ସଂଜାତ ହେଲେ ଆନନ୍ଦ ଚିନ୍ମୟୀ ଭଗବତ୍ ପ୍ରେମ-ଲକ୍ଷଣା ଭକ୍ତିଦେବୀ ଉଦିତ ହୋଇଥାନ୍ତି । ପୁନଶ୍ଚ

ଜ୍ଞାନ ବିଜ୍ଞାନ ସମ୍ପନ୍ନୋ ଭଜ ମାଂ ଭକ୍ତିଭାବିତଃ —

ଏକାଦଶ ଅଧ୍ୟାୟ ।

ମହାପୁରୁଷ ଅଚ୍ୟୁତାନନ୍ଦାଦିଙ୍କର ଏହି ଜ୍ଞାନମିଶ୍ରା ଭକ୍ତି । ଏହି ଜ୍ଞାନୋତ୍ତର ପ୍ରେମଭକ୍ତିରେ ସେ କୃଷ୍ଣଲୀଳା ଆସ୍ୱାଦନ କରୁଥିଲେ ।

ପ୍ରେମ ରାଧା ପ୍ରେମକୃଷ୍ଣ ପ୍ରେମ ଭକ୍ତଜନ
ପ୍ରେମଭକ୍ତି ନିରାକାର କ୍ଷନେ ପୂର୍ଣ୍ଣପୂର୍ଣ୍ଣ ।
ଚୈତନ୍ୟବର ବୋଲି ଯିନା ବୋଲନ୍ତି କୃଷ୍ଣଙ୍କୁ ।
ତାରି କହିଦେଲୁ ଧାୟ ତୁ ନିରାକାରଙ୍କୁ ।

ଶୂ: ସଂ: ୧୦ମ ଅଧ୍ୟାୟ ।

ନିଶବଦବ୍ରହ୍ମ ଅନାଦି ଅନାମ ଦାରୁ ସ୍ୱରୂପେ ବିଜୟେ ।
ତହିଁ ନିଶବଦ ଏ ଦେହେ ଶବଦ ଜଗତଜନ ଚଳାୟେ ।

ଶୂ ୧୮ ଅ

କୃଷ୍ଣର ରସ କଥାମାନ । କରିବ ମୁଖରେ ଗାୟନ ।
ଶଙ୍ଖ ଶିଙ୍ଗା ବେଣୁ ମୁରଲୀ । ଖୋଳ କର୍ତ୍ତାଳ ସର୍ବେମିଳି ।

× × × ×

ବିବିଧ ରସ ବାଦ୍ୟମାନ । କରିବ ରସରେ ଗାୟନ ।
ଅଷ୍ଟ ପ୍ରହର ଗୀତମାନ । କୃଷ୍ଣର ଯେତେ କ୍ରୀଡାସ୍ଥାନ
ସେ ଅବସରମାନ ଜାଣି । ଗାୟନ କରୁଥିବ ପୁଣି ।
ଶ୍ରୀ ରାଧାକୃଷ୍ଣ ପାଦେଧ୍ୟାନ । ଶ୍ରୀବୃନ୍ଦାବନେ ଦେଇ ମନ ।
ଦ୍ୱାଦଶ ବନକୁ ସୁମରି । ଯମୁନା ଗୋବର୍ଦ୍ଧନ ଗିରି ।
ଚୌରାଶୀ ସହସ୍ର ପଦ୍ମସ୍ଥଳ । ଷୋଳସହସ୍ର ଗୋପମେଳ ।
ତ୍ରୈଷଠୀ ଗୋପୀଙ୍କ ଚରଣ । ଅନନ୍ତ ଗୋପାଳ ଧାରଣ ।
ଏହାଙ୍କ ଲୀଳା ଗୁଣମାନ । କହୁଣ ଥିବ ସର୍ବଦନ ।

ଗୁ: ଭ: ଗୀ: ଖ୩ ଷଷ୍ଠ ପଟଳ ।

ପରୀକ୍ଷାନନ୍ତର ଅଚ୍ୟୁତାନନ୍ଦ ରାଜା ପ୍ରତାପଙ୍କ ଦ୍ୱାରା ପୂଜିତ ଓ ସମ୍ମାନିତ ହୋଇଥିଲେ । ରାଜା ପ୍ରତାପରୁଦ୍ର ବାଙ୍କିମୁହାଣଠାରେ ମଠସ୍ଥାପନକରି ସଶିଷ୍ୟ ବାସ କରିବା ନିମିତ୍ତ ଅଚ୍ୟୁତାନନ୍ଦଙ୍କୁ ସନିର୍ବନ୍ଧ ଅନୁରୋଧ କରିଥିଲେ । ଏହି ମଠ ଗୋପାଳ ମଠ ନାମରେ ପରିଚିତ । ସେ ଏହି ସ୍ଥାନରେ ପ୍ରତାପରୁଦ୍ରଙ୍କ ରାଜତ୍ୱକାଳରେ ଅଷ୍ଟଗୁଜ୍ଜରୀ, ବୟାଳିଶ ଚୌପଦୀ, ଦୃଷ୍ଟିବୋଧ ଚଉତିଶା, କେତେକ ଭଜନ ଓ ଗୁରୁଭକ୍ତି ଗୀତା ପ୍ରଭୃତି କେତେକ ଗ୍ରନ୍ଥ ଲେଖିଥିବାର ଜଣା ପଡ଼ୁଅଛି । କାରଣ ସେ ଗୁରୁଭକ୍ତି ଗୀତାରେ ଗୋପାଳଶିଷ୍ୟଙ୍କୁ କହୁଅଛନ୍ତି ।

"ତୁମ୍ଭ ବାଜଣା ଯେ ଗାୟନ । ଶୁଣି ସନ୍ତୋଷ ନୃପଜାଣ ।
ଟେମା କୃଷ୍ଣଭଜନ ଶାଢ଼ୀ । ଅବଶ୍ୟ ରାଜା ଦେବ ଲୋଡ଼ି ।
ପ୍ରସିଦ୍ଧ ପଣେ ବସିଥିବ । ଦେଉଳ ଦୁଆରେ ଗାଇବ ।

ପ୍ରତାପରାଜା ବଇଷ୍ଣବ । ପ୍ରଚ୍ଛିନ୍ନ କରି ଠାବ ଦେବ ।
ଶ୍ରୀ ଜଗନ୍ନାଥ କଟ୍ଟୁଦନ । ଲୀଳା କରିବେ ସେହୁ ସ୍ଥାନ ।
ଦେଉଳୁ ଉଠିଭଇଣ ଯିବେ । ପୁଣି କଳଙ୍କି ରୂପ ହେବ ।

ଏସ୍ଥାନରେ ସେ ପ୍ରାୟ ୨।୩ ବର୍ଷ ଅବସ୍ଥାନ କରି ସ୍ୱବୈଷ୍ଣବ ଧର୍ମ୍ମ ଜନସାଧାରଣରେ ବିଶେଷତଃ ଗୋପାଳମାନଙ୍କ ମଧ୍ୟରେ ପ୍ରଚାର କରିଥିଲେ । ଏହି କାଳରେ ବା ଏହାର ପୂର୍ବେ ତୀର୍ଥାଟନରୁ ପ୍ରତ୍ୟାବର୍ତ୍ତନର କିଛି କାଳପରେ ଜଗନ୍ନାଥ ଦାସଙ୍କୁ ସେ ଅତି ବଡ଼ ବୋଲି ପରିଚୟ ପାଇଥିଲେ ; ଦିବାକର ଦାସ ଜଗନ୍ନାଥ ଚରିତାମୃତରେ ଲେଖିଅଛନ୍ତି :—

**ଶ୍ରୀଗୋପାଳ-ଗରୁଗୋସାଇଁ** । କ୍ଷେତ୍ର ବରେଣ ଥା'ନ୍ତି ରହି ।
ଗୋପାଳେ ଉପଦେଶ କଲେ । ଗୋପାଳ ଗୁରୁ ବୋଲାଇଲେ ।
ଅତିବଡ଼ ଭାଷା ବୋଲିଣ । ସଂଶୟ କଲେ ତାଙ୍କ ମନ ।
ଗୋପାଳେ ଆଜ୍ଞା କଲେ ଏତ । ନିତ୍ୟରାଧାଙ୍କ ଅଂଶୁଜାତ ।
ଅତି ଆଶ୍ଚର୍ଯ୍ୟ କଥା ଯେଣୁ । ଅତିବଡ଼କୁ ଯୋଗ୍ୟତେଣୁ ।
ରାଧାଙ୍କ ଅଂଶେ ଜାତ ଏହି । ସେଥେ ସଂଶୟ କର ନାହିଁ ।
ଗୁରୁ ବିଚାର କଲେ ଚିତ୍ତ । ସେ ଅତି ବଡ କର୍ମ୍ମେ ଯୁକ୍ତ ।
ଯେବେ ରାଧାଙ୍କ ଅଂଶୁ ଜାତ । ପୁଚ୍ଛିବା ନିତ୍ୟର ବୃତ୍ତାନ୍ତ ।
ଗୁରୁ ଦିନେକ ବଟତଳେ । ସ୍ୱାମୀଙ୍କ ସମ୍ଭାଷଣ କଲେ ।
ନିତ୍ୟ ପୁରୁଷୋତ୍ତମ ଦୁଇ । ସେକହ ପଦ ଏ ଅଟଇ ।
କାହିଁରେ କି ଭାବ ଅଛଇ । କହିବା ହେଉଛି ବୁଝାଇ ।
ଶୁଣି ସ୍ୱାମୀମା ତୋଷ ହେଲେ । ସେଥୁ ପ୍ରେମନାହିଁ ବୋଇଲେ ।
ଯେଉଁ ମୂର୍ତ୍ତିର ଯେଉଁ ସ୍ଥାନ । ଯେଉଁ ପ୍ରେମ ଯେଉଁ ବିଧାନ ।
ଯେହୁ ଭଜନ୍ତି ଯେ ବା ଭକ୍ତ । ଯେହୁ ମନ୍ତ୍ରେ ଯେହୁ ଭାବନ୍ତି ।
ଯାହାକୁ ଯେ ବା ଛଡ଼ା ହୋଇ । ଯେ ଯହିଁକି ଲୋଡ଼ା ଅଛଇ ।

× × ×

କୃଷ୍ଣର ରସ କଥାମାନ । କରିବ ମୁଖରେ ଗାୟନ ।
ଶଙ୍ଖ ଶିଙ୍ଗା ବେଣୁ ମୁରଲୀ । ଖୋଳ କର୍ତ୍ତାଳ ସର୍ବେମିଳି ।

× × × ×

ବିବିଧ ରସ ବାଦ୍ୟମାନ । କରିବ ରସରେ ଗାୟନ ।
ଅଷ୍ଟ ପ୍ରହର ଗୀତମାନ । କୃଷ୍ଣର ଯେତେ କ୍ରୀଡାସ୍ଥାନ
ସେ ଅବସରମାନ ଜାଣି । ଗାୟନ କରୁଥିବ ପୁଣି ।
ଶ୍ରୀ ରାଧାକୃଷ୍ଣ ପାଦେଧ୍ୟାନ । ଶ୍ରୀବୃନ୍ଦାବନେ ଦେଇ ମନ ।
ଦ୍ୱାଦଶ ବନକୁ ସୁମରି । ଯମୁନା ଗୋବର୍ଦ୍ଧନ ଗିରି ।
ଚୌରାଶୀ ସହସ୍ର ପଦ୍ମସ୍ଥଳ । ଷୋଳସହସ୍ର ଗୋପମେଳ ।
ଚୌଷଠୀ ଗୋପୀଙ୍କ ଚରଣ । ଅନନ୍ତ ଗୋପାଳ ଧାରଣ ।
ଏହାଙ୍କ ଲୀଳା ଗୁଣମାନ । କହୁଣ ଥିବ ରାତ୍ରଦିନ ।

ଗୁ: ଭ: ଗୀ: ୪୩ ଷଷ୍ଠ ପଟଳ ।

ପରୀକ୍ଷାନନ୍ତର ଅଚ୍ୟୁତାନନ୍ଦ ରାଜା ପ୍ରତାପଙ୍କ ଦ୍ୱାରା ପୂଜିତ ଓ ସମ୍ମାନିତ ହୋଇଥିଲେ । ରାଜା ପ୍ରତାପରୁଦ୍ର ତାଙ୍କୁ ମୁହାଣଠାରେ ମଠସ୍ଥାପନକରି ସଶିଷ୍ୟ ବାସ କରିବା ନିମିତ୍ତ ଅଚ୍ୟୁତାନନ୍ଦଙ୍କୁ ସନିର୍ବନ୍ଧ ଅନୁରୋଧ କରିଥିଲେ । ଏହି ମଠ ଗୋପାଳ ମଠ ନାମରେ ପରିଚିତ । ସେ ଏହି ସ୍ଥାନରେ ପ୍ରତାପରୁଦ୍ରଙ୍କ ରାଜତ୍ୱକାଳରେ ଅଷ୍ଟଗୁଜ୍ଜରୀ, ବୟାଳିଶ ଚୌପଦୀ, ଦୃଷ୍ଟିବୋଧ ଚଉତିଶା, କେତେକ ଭଜନ ଓ ଗୁରୁଭକ୍ତି ଗୀତା ପ୍ରଭୃତି କେତେକ ଗ୍ରନ୍ଥ ଲେଖିଥିବାର ଜଣା ପଡ଼ୁଅଛି । କାରଣ ସେ ଗୁରୁଭକ୍ତି ଗୀତାରେ ଗୋପାଳଶିଷ୍ୟଙ୍କୁ କହୁଅଛନ୍ତି ।

"ତୁମ୍ଭ ବାଜଣା ଯେ ଗାୟନ । ଶୁଣି ସନ୍ତୋଷ ନୃପଜାଣ ।
ଏ ତମା କୃଷ୍ଣ ଜନ ଶାନ୍ତୀ । ଅବଶ୍ୟ ରାଜା ଦେବ ଲେଙ୍କ ।
ପ୍ରସିଦ୍ଧ ପଣେ ବସିଥିବ । ଦେଉଳ ଦୁଆରେ ଗାଇବ ।

ପ୍ରତାପରୁଦ୍ର ନରେଶ୍ୱର । ପ୍ରଚ୍ଛିନ୍ନ କରି ଠାବ ଦେବ ।
ଶ୍ରୀ ଜଗନ୍ନାଥ କଟ୍ଟିଦାନ । ଲୀଳା କରିବେ ସେହୁ ସ୍ଥାନ ।
ଦେଉଳୁ ଉଦଭାଇଣ ଯିବେ । ପୁଣି କଳଙ୍କି ରୂପ ହେବ । ,

ଏସ୍ଥାନରେ ସେ ପ୍ରାୟ ୨୩ ବର୍ଷ ଅବସ୍ଥାନ କରି ସ୍ୱବୈଷ୍ଣବ ଧର୍ମ ଜନସାଧାରଣରେ ବିଶେଷତଃ ଗୋପାଳମାନଙ୍କ ମଧ୍ୟରେ ପ୍ରଚାର କରିଥିଲେ । ଏହି କାଳରେ ବା ଏହାର ପୂର୍ବେ ତୀର୍ଥ ଠନରୁ ପ୍ରତ୍ୟାବର୍ତ୍ତନର କିଛି କାଳପରେ ଜଗନ୍ନାଥ ଦାସଙ୍କୁ ସେ ଅତି ବଡ଼ ବୋଲି ପରିଚୟ ପାଇଥିଲେ ; ଦିବାକର ଦାସ ଜଗନ୍ନାଥ ଚରିତାମୃତରେ ଲେଖିଅଛନ୍ତି :—

**ଶ୍ରୀଗୋପାଳ-ଗରୁଗୋସାଇଁ** । କ୍ଷେତ୍ର ବରେଣ ଥାନ୍ତି ରହି ।
ଗୋପାଳେ ଉପଦେଶ କଲେ । ଗୋପାଳ ଗୁରୁ ବୋଲାଇଲେ ।
ଅତିବଡ଼ ଭାଷା ବୋଲଣ । ସଂଶୟ କଲେ ତାଙ୍କ ମନ ।
ଗୋପାଳେ ଆଜ୍ଞା କଲେ ଏ ତ । ନିତ୍ୟରାଧାଙ୍କ ଅଂଶୁଜାତ ।
ଅତି ଆଶ୍ଚର୍ଯ୍ୟ କଥା ଯେଣୁ । ଅତିବଡ଼ଙ୍କୁ ଯୋଗ୍ୟତେଣୁ ।
ରାଧାଙ୍କ ଅଂଶେ ଜାତ ଏହି । ହେଁଥେ ସଂଶୟ କରି ନାହିଁ ।
ଗୁରୁ ବିଚାର କଲେ ଚିତ୍ତ । ହେ ଅତି ବଡ଼ କର୍ମ୍ମେ ଯୁକ୍ତ ।
ଯେବେ ରାଧାଙ୍କ ଅଂଶୁ ଜାତ । ପୁଚ୍ଛିବା ନିତ୍ୟର ବୃତ୍ତାନ୍ତ ।
ଗୁରୁ ଦିନେକ ବଇଠିଲେ । ସ୍ୱାମୀଙ୍କ ସମ୍ଭାଷଣ କଲେ ।
ନିତ୍ୟ ପୁରୁଷୋତ୍ତମ ଦୁଇ । ହେଁକହ ପଦ ଏ ଅଟଇ ।
କାହିଁରେ କ ଭାବ ଅଛଇ । କହିବା ହେଉଛି ବୁଝାଇ ।
ଶୁଣି ସ୍ୱାମୀମା ତୋଷ ହେଲେ । ହେଁଥୁ ପ୍ରେମନାହିଁ ବୋଇଲେ ।
ଯେଉଁ ମୂର୍ତ୍ତିର ଯେଉଁ ସ୍ଥାନ । ଯେଉଁ ପ୍ରେମ ଯେଉଁ ବିଧାନ ।
ଯେହୁ ଭଜନ୍ତି ଯେ ବା ଭକ୍ତ । ଯେହୁ ମନ୍ତ୍ରେ ଯେହୁ ଭାବନ୍ତି ।
ଯାହାକୁ ଯେ ବା ଛଡ଼ା ହୋଇ । ଯେ ଯହିଁକି ଲୋଡ଼ା ଅଛଇ ।

× × ×

ନିତ୍ୟ ମହିମା ପରିପାଟେ । କହିଲେ ଗୁରୁଙ୍କ ସମୀପେ ।
ଶୁଣି ଆନନ୍ଦ ଗୁରୁ ହେଲେ । ହୃଦେ ରାମକୃଷ୍ଣ ଭାବିଲେ ।
ଜାଣିଲେ ରାଧା ଅଂଶେ ଜନ୍ମ । **ସଖୀପଣକୁ** ଏ ଭଜନ ।
ସଖୀ ସଖୀ ବୋଲି ବଚନ । ଗୁରୁ ଡାକନ୍ତି ପ୍ରତିଦିନ ।

ଉପରସ୍ଥ ଉଦ୍ଧୃତାଂଶରୁ 'ଗୋପାଳ ଗୁରୁଗୋସାଇଁ', ଅଚ୍ୟୁତାନନ୍ଦ ଅଟନ୍ତି, ଏବଂ ସେ ସମନ୍ଧକୁ ସେ ନିଜର ଗୁଣ ମାହାତ୍ମ୍ୟ ହେତୁ ପ୍ରସିଦ୍ଧି ଲାଭକରିଥିଲେ ବୋଲି ପ୍ରତିପନ୍ନ ହେଉଅଛି ।

ଏହି ପଞ୍ଚ ଶାଖାଙ୍କ ମତରେ ନିତ୍ୟ ଓ ପୁରୁଷୋତ୍ତମ ଏକ ଅର୍ଥାତ୍ ଗୋଲୋକର ପ୍ରତିରୂପ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ଅଟେ ।

ଏ ନୀଳଗିରି ନିତ୍ୟସମ । ତେଣୁ ଶ୍ରୀକୃଷ୍ଣ ନିତ୍ୟଧାମ ।
ଏ ନୀଳଗିରି ନିତ୍ୟଦୁଇ । ଅଭିନ୍ନ ଅଭେଦ ଅଟଇ ।
ଗୋପ ମଥୁରା ଦ୍ୱାରାବତୀ । ଶ୍ରୀକୃଷ୍ଣ ଅଯୋଧ୍ୟାର ପତି ।
ଏମାନେ ନିତ୍ୟସ୍ଥଳୁଁ ଜାତ । ଅଭିନ୍ନ ନ କର ହୋ ପାର୍ଥ ।
ଏ ସର୍ବ ନିତ୍ୟରୁ ନିର୍ମାଣ । ଶ୍ରୀକୃଷ୍ଣ କ୍ରୀଡ଼ା ରସ ସ୍ଥାନ ।
ତୁ ଏହା ସଂଶୟ ନ କର । ନିତ୍ୟରେ ଯେମନ୍ତ ବିହାର ।
ସେହି ରୂପରେ ନିରାକାର । ଶ୍ରୀ ନୀଳଗିରିରେ ବିହାର ।

ବେଦାନ୍ତ ସାର, ଗୁପ୍ତଗୀତା, ୭ମ ଅଧ୍ୟାୟ ।

ତେଣୁକରି ଲୋକେ ପ୍ରକାଶ । ଜଗନ୍ନାଥ ନିତ୍ୟ ଗୋଲୋକ ବାସ ।
ନିତ୍ୟ ଗୋଲକ କ୍ଷେତ୍ରବର ଏକ । ଉପଦେଶରେ ଜାଣନ୍ତି ବିବେକ ॥

\+ \+ \+

ଉପଦେଶରେ ଜାଣନ୍ତି ସୁଜନ । ଜଗନ୍ନାଥ ଶ୍ରୀକୃଷ୍ଣ ଏକ ଜ୍ଞାନ ।

୨ମ ଅଧ୍ୟାୟ ।

ପୁନଶ୍ଚ ୧୮ ଓ ୩୧ ଅଧ୍ୟାୟ ଦ୍ରଷ୍ଟବ୍ୟ ।

କହୁଅଛୁ ଚଇତନ ଶୁଣରେ ମନାଇ ।
କ୍ଷୀରସିନ୍ଧୁ ମଧ୍ୟେ ଦେଖ କଳ୍ପବଟ ଯାଇ ।
ଗୁପତ ହୋଇଛୁ ମହାନିତ୍ୟ ଯହିଁଠାଇ ।
ଘନ ଘନ ହୋଇ ନଦ ମାଡ଼ଇ ସେଠାଇ ।
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମରେ ହେକ ।
ଚୂରଦ୍ୱାରେ ଆବୋର ବହୁଛୁ ଚୂରବେଦ ।
ସ୍ୱାମୀ ଦର୍ଶନକୁ ବାଟ ପଡ଼ିଛୁ ସଧୀରେ ।
ଜଗନ୍ନାଥ ମହାପ୍ରଭୁ ସିଂହାସନପରେ ।
ଝିନ ଯେ ପଟମାଅଙ୍ଗେ ଦାଉଅଛୁ ଶୋଭା ।
ନିତ୍ୟ ଯେ କିଶୋରୀ ରାଧା ତାଙ୍କ ଅଙ୍ଗେ ଆଭା

## ଅଚ୍ୟୁତାନନ୍ଦଙ୍କ ଭଜନ ।

ଗୋଲୋକ ଲୀଳା ଗୋପପୁର । ରଖିଲେ ଶ୍ରୀବୃନ୍ଦାବନର —
ଏନିତ୍ୟ ଲୀଳାର ସ୍ୱାମ୍ୟା-କହୁ ପୂର୍ଣ୍ଣି ନୁହେଁ ଗୁରୁ ଭ:ଗୀ: ୩।୨୪



ଶୁଣ ହେ ସୁଜନ ଜନେ ଶ୍ରୀକୃଷ୍ଣଙ୍କ ଲୀଳା ଆଖ୍ୟାନେ
ନିତ୍ୟସ୍ଥାନେ ନିତ୍ୟ ଖେଳ ଖେଳନ୍ତି ହରି ।
କୋଟି ବ୍ରହ୍ମ ନ ଜାଣନ୍ତି ଅନନ୍ତ ଶେଷ ମୂରତି
ସେ ପ୍ରଭୁବନେ ନିତ୍ୟ ଏ ମାନଗିରି ।
ଯେଉଁ ଭୂମି ଏ ରଙ୍ଗସ୍ଥଳୀ । ଅଷ୍ଟଦଳେ ବେଢ଼ୀ ଶୋଭା ଶେଷମଣ୍ଡଳୀ ।
ଅଶେଷ ବ୍ରହ୍ମାଣ୍ଡ ସାର ଅନନ୍ତ ଶିର ଉପର
ମାନାଦ୍ରି ଅବ୍ୟୟ ନିତ୍ୟସ୍ଥଳ ଗୋଲକ ।
ରାଧା କୃଷ୍ଣ ପ୍ରେମରସ କିଶୋର କିଶୋରୀ ବେଶ
ଚଉଷଠି ବନ୍ଧେ କଲେ ରମଣ ରସ ।
ମୁଖେ ମୁଖ ଅଧର ପାନ
ନବ ବନ୍ଧୁଲୀରେ ଅଳି ଚୁମ୍ବେ ଯେସନ ।
ଷୋଳ ଚଉପଦୀ ଜଗନ୍ନାଥ ଦାସ ।

ଅଯୋଧ୍ୟା ଗୋପବୃନ୍ଦାବନ । ଏ ଆଦି ଯେତେ ଲୀଳାସ୍ଥାନ ।
ନିତ୍ୟସ୍ଥଳରୁ ବିକାଶଇ । ପ୍ରକଟନ୍ତ ଲୀଳା ହେବାପାଇଁ ।
ପୁରୁଷୋତ୍ତମର ସମାନ । ନାହିଁନା କ୍ଷେତ୍ରର ଉପମ ।

୧୮ଶ ଅଧ୍ୟାୟ ଜ: ଚ:

ବୋଇଲେ ଶ୍ରୀ ଚୈତନ୍ୟ ପ୍ରଭୁହିଁ । ଚାଲ ଭ୍ରମିବା ତୀର୍ଥ ମହୀ ।
ଶୁଣିଲେ ଆଜ୍ଞା ଶ୍ରୀ ଚୈତନ୍ୟ । ତୀର୍ଥେ କି ଅଛୁ ପ୍ରୟୋଜନ ।
କ୍ଷେତ୍ର ତୀର୍ଥ ଚୁଡ଼ଣ ସ୍ଥାନ । ପୁରୁଷୋତ୍ତମରେ ଗୋପ୍ୟାନ ।

୩ୟ ଅଧ୍ୟାୟ ଜ: ଚ:

ଯେହୁ ଗୋଲୋକ ନିତ୍ୟସ୍ଥଳ । ସେହୁଟି ଗିରି ନୀଳାଚଳ ।
କୋଟିଏ ଯୁଗ ଯେବେ ଯାଇ । ଏଥିର ଲୀଳା ନ ଟଳଇ ।
ଶ୍ରୀଜଗନ୍ନାଥେ ଷୋଳକଳା । ଏଥୁଁ କଳାଏ ନନ୍ଦବଳା ।
କଳାକେ ଷୋଳକଳା ହୋଇ । ଘେନି ଜନ୍ମିଲେ ଗୋପେ ଯାଇ ।

ବ୍ରହ୍ମବୈବର୍ତ୍ତ, ପଦ୍ମପୁରାଣ, ଯାମଳାଦି ବାକ୍ୟ ଗ୍ରହଣକରି ଗୌଡ଼ୀୟ ବୈଷ୍ଣବମାନେ ବୃନ୍ଦାବନକୁ ନିତ୍ୟ ଓ ଗୋଲୋକରୁ ଅଭିନ୍ନରୂପ ମଣିଅଛନ୍ତି । ଉତ୍କଳୀୟ ବୈଷ୍ଣବମାନେ ବ୍ରହ୍ମ, ପଦ୍ମପୁରାଣ ବ୍ରହ୍ମବୈବର୍ତ୍ତ, ଅଗ୍ନି, ଗରୁଡ଼, ବ୍ରହ୍ମାଣ୍ଡ, ଭବିଷ୍ୟ ବୃହନ୍ନୃସିଂହ, ବାୟୁପୁରାଣ, ଶିବଧର୍ମୋତ୍ତର, ବ୍ରହ୍ମଯାମଳ, ବିଷ୍ଣୁପୁରାଣ, ଶିବପୁରାଣ, ଭାଗବତ, ବରାହ, ସ୍କନ୍ଦ, କୂର୍ମାଦି ପୁରାଣମାନଙ୍କ ବଚନ ଗ୍ରହଣକରି ପୁରୁଷୋତ୍ତମକୁ ନିତ୍ୟ ରୂପେ ଗ୍ରହଣ କରିଅଛନ୍ତି । ଏ ଧାମ ଶୈବ, ଶାକ୍ତ ସୌର, ଗାଣପତ୍ୟାଦି ବିଭିନ୍ନ ହିନ୍ଦୁଧର୍ମାବଲମ୍ବୀଙ୍କ ଦ୍ୱାରା ଗତିମୁକ୍ତିଦାୟକରୂପେ ଗୃହୀତ, ଅନ୍ୟ କୌଣସି ଧାମ ଏପରି ଗୃହୀତ ହୋଇନାହାନ୍ତି । ପଞ୍ଚଶାଖା, ଦେବଦୁର୍ଲ୍ଲଭ, ଭୂପତି ପଣ୍ଡିତ, ଦ୍ୱିତୀୟ ଧନକୃଷ୍ଣଙ୍କ ମତରେ ମର୍ତ୍ତ୍ୟ ବୃନ୍ଦାବନ ମହାନିତ୍ୟସ୍ଥଳ ନୁହେଁ । ଗୌଡ଼ୀୟ ବୈଷ୍ଣବଙ୍କମତରେ ବୃନ୍ଦାବନର ଲୀଳା ମାଧୁର୍ଯ୍ୟ-

ଲୀଳା । ଉତ୍କଳର ପଞ୍ଚସଖାଙ୍କ ଓ ତତ୍ପନ୍ଥାବଲମ୍ବିଙ୍କ ମତରେ ପୁରୁଷୋତ୍ତମ ଲୀଳା ମାଧୂର୍ଯ୍ୟଲୀଳା ।

ବୃନ୍ଦାବନଟି ଯେ ଅଇଶ୍ୱର୍ଯ୍ୟ । ପୁରୁଷୋତ୍ତମଟି ମାଧୂର୍ଯ୍ୟ ।
ଗୋପଲୀଳା ରାସ ବିଧାନ । ବାଞ୍ଛା କଲେ ନନ୍ଦନନ୍ଦନ ।
ବୃନ୍ଦାବନରେ ଲୀଳା ଯେତେ । ସର୍ବେ ଅଇଶ୍ୱର୍ଯ୍ୟ ବୁଝନ୍ତେ ।
ବୃନ୍ଦାବନେ ଯେ ଅଇଶ୍ୱର୍ଯ୍ୟ । ଏତେ ଲକ୍ଷଣ ବୁଝ କାର୍ଯ୍ୟ ।
ବୈକୁଣ୍ଠେ ଦେବଙ୍କ ଗୁହାରି । ଶୁଣି ବୋଇଲେ ଦଇତାରି ।
ପୃଥ୍ୱୀରେ ଅସୁର ମାରିବି । ଗୋପଲୀଳା ଗୋପେ କରିବି ।
ଗୋପୀ ରମିବି ବୃନ୍ଦାବନେ । ଏ ସର୍ବ ଐଶ୍ୱର୍ଯ୍ୟ ବିଧାନେ ।

× × ×

ଏ ଆଦି ଯେତେ ଅବତାର । ସମସ୍ତ କାମନା ବିସ୍ତାର ।
ଜଗନ୍ନାଥଙ୍କ ବାଞ୍ଛା ନାହିଁ । ମାଧୂର୍ଯ୍ୟଭାବେ ଛନ୍ତି ରହି ।
ଏଣୁ ମଧୁର ଆସ୍ୱାଦନ । କୋଟିଯୁଗେ ରସ ସାଧନ ।
କେବଳ ପର୍ବ ତୀର୍ଥବେଳେ । ଐଶ୍ୱର୍ଯ୍ୟ ଭୋଗ ବେଶ ମିଳେ ।
ତାଙ୍କରେ ତେଣେ ବାଞ୍ଛା ନାହିଁ । ଭକ୍ତେ ଦିଅନ୍ତି ଭକ୍ତପାଇଁ ।

ଉପରୋକ୍ତ ନିତ୍ୟସ୍ଥଳ ଓ ମାଧୂର୍ଯ୍ୟଲୀଳା ବିଷୟରେ ପଞ୍ଚଗୋସ୍ୱାମୀମାନେ ଏକମତ ଏହା ଆମ୍ଭେମାନେ ସପ୍ରମାଣ ନିର୍ଦ୍ଦେଶ କଲୁଁ । ଏହା ଗୌଡ଼ୀୟ ବୈଷ୍ଣବମାନଙ୍କର ବିରୋଧି ମତ ପଞ୍ଚଶାଖା ଓ ତତ୍ପନ୍ଥାନୁବର୍ତ୍ତୀଙ୍କ ମତରେ ଗୌଡ଼ୀୟ ବୈଷ୍ଣବମାନେ ପ୍ରକୃତ ପ୍ରେମତତ୍ତ୍ୱ ଜାଣନ୍ତି ନାହିଁ ।

ପୁଣିହିଁ ଆଜ୍ଞା ଶ୍ରୀଚୈତନ୍ୟ । ଗୁପତ କରି ଏହା ମନ ।
ଯେ ଯେଉଁସ୍ଥାନେ ଆସି ଥାଇ । ସେହିଭାବେ ସେହୁ ଜାଣଇଁ ।
ନିତ୍ୟାନନ୍ଦ ଆଦି ସମେତେ । ଦ୍ୱାଦଶ ଗୋପାଳ ସଙ୍ଗତେ ।

ଅମର ବୈକୁଣ୍ଠ ଏ ଜାତ । ଏ ନ ଜାଣନ୍ତି ପ୍ରେମତତ୍ତ୍ୱ ॥
ତୁମ୍ଭେ ଯେ ଆମ୍ଭର ସଙ୍ଗତ । ପରମ ନର୍ଥୁ ହେଲ ଜାତ ।
ଜ: ଚ ୭ ମ ଅଧ୍ୟାୟ ।

ସେମାନେ ଚୈତନ୍ୟଚନ୍ଦ୍ରଙ୍କୁ ଜଗନ୍ନାଥ କ୍ଷେତ୍ରରେ ଜଗନ୍ନାଥ ଦାସାଦ ପଞ୍ଚଶାଖାଙ୍କ ତଥା ରାମାନନ୍ଦଙ୍କ ପ୍ରୀତିରଜ୍ଜୁରେ ବନ୍ଧାହେବା ଏବଂ ଜଗନ୍ନାଥ କ୍ଷେତ୍ରକୁ ଶ୍ରେଷ୍ଠମଣି ଅନ୍ୟତ୍ର କ ବୃନ୍ଦାବନ ଧାମକୁ ଯିବାର ମନ ନ ବଳାଇବାରୁ ଅତ୍ୟନ୍ତ କ୍ଷୁବ୍ଧ ହୋଇଥିଲେ ଓ ପୁରୀଧାମରେ ଚୈତନ୍ୟଚନ୍ଦ୍ରଙ୍କ ସଙ୍ଗ ତ୍ୟାଗକରି ବୃନ୍ଦାବନକୁ ଯାତ୍ରା କରିଥିଲେ । କୃଷ୍ଣଦାସ କବିରାଜାଦ ଗୌଡୀୟ ବୈଷ୍ଣବ-ମାନେ କହନ୍ତି ଯେ ସେମାନେ ଚୈତନ୍ୟଚନ୍ଦ୍ରଙ୍କ ଆଦେଶମତେ ବୃନ୍ଦାବନକୁ ପ୍ରୟାଣ କରିଥିଲେ । ଦିବାକରଦାସଙ୍କ ଜଗନ୍ନାଥ ଚରିତାମୃତ ପାଠ କଲେ ଜଣାଯାଏ ଯେ ଜଗନ୍ନାଥଦାସଙ୍କୁ ଚୈତନ୍ୟଚନ୍ଦ୍ର ଅତିବଡ଼ ଆଖ୍ୟା ପ୍ରଦାନ କରିବାରୁ ସେମାନେ ଈର୍ଷାରେ ପ୍ରଜ୍ୱଳିତ ହୋଇଥିଲେ । ଚୈତନ୍ୟଚନ୍ଦ୍ର ଅତିବଡ଼ ଆଖ୍ୟା ପ୍ରତ୍ୟାହାର ନ କରିବାରୁ ସେମାନେ ପୁରୀଧାମ ଛାଡ଼ି ବୃନ୍ଦାବନ ଧାମ ବାସ ଅଙ୍ଗୀକାର କରିଥିଲେ ।

ବିଚାରିଥିଲୁ ଆମ୍ଭେ ତହିଁ । ଦୟା କରିବେ ଶଚୀସୁତ ।
'ଅତିବଡ଼' ପଦ ଛଡ଼ାଇ । ପୁରୁଷୋତ୍ତମ ନେବେ ସେହି ।
ପୁରୁଷୋତ୍ତମ ତ ନ ଯିବା । କେଉଁ ଆଶ୍ରେ ଭକ୍ତି କରିବା ।
ପୂର୍ବେ ଗୋବିନ୍ଦ ଲୀଳାସ୍ଥାନ । ଚାଲି ଯିବା ଶ୍ରୀ ବୃନ୍ଦାବନ ।

\+ \+ \+

ଛାଡ଼ି ପୁରୁଷୋତ୍ତମ ଅଂଶ । ବୃନ୍ଦାବନେ କଲେ ନିବାସ ।
ବେଦ ପୁରାଣଙ୍କ ବଚନ । ତେଜି କଲେ ଅନ୍ୟ ବିଧାନ ।
ପୁରୁଷୋତ୍ତମେ ଯେତେ ଗତି । ସେ କଥା ଛାଡ଼ି ଅନ୍ୟ ରୀତି ।
ହରେ ରାମକୃଷ୍ଣ ଛାଡ଼ିଲେ । ହରେ ରାମକୃଷ୍ଣ ଧରିଲେ ।

ଜଗନ୍ନାଥ ସେବା ଦୂର କଲେ । ବୃନ୍ଦାବନ ରଜ ପାଇଲେ ।
ଯୁଗଳ ଗାୟତ୍ରୀ ଛାଡ଼ିଲେ । କାମ ଗାୟତ୍ରୀ ଆଶ୍ରେ କଲେ ।
ଇତ୍ୟାଦି

× × ×

ସ୍ମୃତି ସମ୍ମୁଖରେ ଆସନ୍ତି । ଗୁଣ୍ଡିଚା ଗହଣେ ଖଟନ୍ତି ।
ଅତିବଡ଼ ପଦେ ରୁଷନ୍ତି । ଲେଉଟି ବୃନ୍ଦାବନେ ଯାନ୍ତି ।
ବୃନ୍ଦାବନ ପଦ ଟେକଲେ । ତହିଁ କ ଲକ୍ଷ ଗ୍ରନ୍ଥ କଲେ ।
ବ୍ରହ୍ମା ବ୍ୟାସଙ୍କ ବାକ୍ୟ ନୋହି । ଆଶ୍ରେସ୍ତବ ଟେକଲେ ନେଇ ।
ସେ ପ୍ରଭୁ ଚୈତନ୍ୟ ଗୋସାଇଁ । ପୁରୁଷୋତ୍ତମେ ଥାନ୍ତି ରହି ।
ଏମ୍ଭୁ ଅଧ୍ୟାୟ ଜ, ଚ,

ଚୈତନ୍ୟଚନ୍ଦ୍ର ପୁରୁଷୋତ୍ତମଧାମ ଛାଡ଼ି ବୃନ୍ଦାବନକୁ ଯାଇ ନ ଥିଲେ । ଏହାଦ୍ୱାରା ପୁରୁଷୋତ୍ତମକ୍ଷେତ୍ରର ସର୍ବଶ୍ରେଷ୍ଠତ୍ୱ ଓ ଜଗନ୍ନାଥଙ୍କ ମାଧୁର୍ଯ୍ୟଭାବ ସମ୍ପୂର୍ଣ୍ଣରୂପେ ପ୍ରତିପାଦିତ ହେଉଅଛି । ଜଗନ୍ନାଥ ଦାସଙ୍କଠାରେ ଗୌଡ଼ୀୟ ବୈଷ୍ଣବମାନଙ୍କର ଈର୍ଷା ପ୍ରଦର୍ଶନ, ତହୁଁ ପୁରୀଧାମ ତ୍ୟାଗ ଓ ବୃନ୍ଦାବନରେ ଆଶ୍ରୟ ଓ ଗ୍ରନ୍ଥାଦି ରଚନାଦ୍ୱାରା ବୃନ୍ଦାବନର ଶ୍ରେଷ୍ଠତ୍ୱ ପ୍ରତିପାଦନ ଯାହା ଦିବାକର ଦାସ ଜଗନ୍ନାଥ ଚରିତାମୃତରେ ଲେଖିଅଛନ୍ତି ତାହା ସମ୍ପୂର୍ଣ୍ଣ ସତ୍ୟ ଏଥିରେ ଅଣୁମାତ୍ର ସନ୍ଦେହର ଅବକାଶ ନାହିଁ ।

ଏତିକ ନୁହେଁ ଅଚ୍ୟୁତାନନ୍ଦ ମଧ୍ୟ ଗୁରୁଭକ୍ତିଗୀତା ୪୪ପଟଳରେ କହିଅଛନ୍ତି ଯେ :—

ଶ୍ରୀକୃଷ୍ଣ ଚୈତନ୍ୟ ଠାକୁର । ନଦିଆପୁରେ ମନ୍ତ୍ରସାର ।
ଷୋଳ ନାମକୁ ତିନ ନାମ । ମନ୍ତ୍ର ଯେ କଲେକ ଉତ୍ତମ ।
ହରେକୃଷ୍ଣ ଯେ ମନ୍ତ୍ରକଲେ । ନଦିଆ ପୁରକୁ କହିଲେ ।
ମନ୍ତ୍ରରାଜରୁ ନାମେ ଆଣି । ଠାକୁରାଣୀଙ୍କ ମନ୍ତ୍ର ପୁଣି ।
ମନ୍ତ୍ର ରାଜରୁ ଏକ ନାମ । କୃଷ୍ଣ ମନ୍ତ୍ରକର ଉତ୍ତମ ।

ଗାୟତ୍ରୀ ସାବତ୍ରୀରୁ ସାର । ବାଛୁଣ କଲେ ଯେ ବାହାର ।
କାମ ଗାୟତ୍ରୀ ମନ୍ତ୍ର କରି । ନଦୀଆ ପୋଏ ତା ସୁମରି ।
ସହସ୍ର ନାମରୁ ବାଛୁଣି । କଲେ ଯେ ପଞ୍ଚ ନାମ ପୁଣ ।
ନଦୀଆ ପୋଏ ସୁମରଲେ । ମୂଳ ମନ୍ତ୍ରକୁ ଗୋପ୍ୟ କଲେ ।
ପୁରସ୍ତମେ ଯେ ରହିଣ । ଶ୍ରୀକୃଷ୍ଣ ଚୈତନ୍ୟଙ୍କ ଜାଣ ।
ସମ୍ପୂର୍ଣ୍ଣ ଷୋଳ ନାମ ପୁଣ । ଜଗନ୍ନାଥ ଦାସେ କହିଣ ।
ଶ୍ୟାମ ଯେ ପଞ୍ଚାକ୍ଷର ପୁଣ । ଯଡଶାବନ୍ତକୁ ଯେ କହିଣ ।
ତାରକ ବଳରାମ ଦାସେ । କହିଲେ ଯତନେ ହରଷେ ।
ଶିଶୁକୁ ଏକାକ୍ଷର କହି । ପାଦୁକା ମନ୍ତ୍ର ଆର ଦେଇ ।
ଅଣଅକ୍ଷର ମନ୍ତ୍ର ସାର । କହିଲେ ଅଚ୍ୟୁତାନନ୍ଦର ।

ଗୁରୁ, ଗୀ ୩-୪୪-ପଟଳ ।

ଷୋଳନାମୁଁ ତନନାମ କଲରେ ପ୍ରଗ୍ଭର ।
ଚୈତନ୍ୟ ଠାକୁର ତାହା କଲେକ ବାହାର ।

ଗୁରୁ, ଗୀ ୬, ୧୪ ପଟଳ ।

ଏଥିରୁ ସ୍ପଷ୍ଟ ପ୍ରତୀତ ହୁଏ ଯେ ଗୌଡ଼ୀୟ ବୈଷ୍ଣବମାନେ କେବଳ ତନନାମ ଷଡ଼ କ୍ଷର ଜାଣନ୍ତି ଓ ଅନ୍ୟ ତେରନାମ ୬୬ ଅକ୍ଷର ଜାଣନ୍ତି ନାହିଁ । ଏହି ପଞ୍ଚଶାଖାଙ୍କୁ ତାହା ବଦିତ ଥିଲା ଓ ତଚ୍ଛିଷ୍ୟମାନେ ପରମ୍ପରାକ୍ରମେ ୧୬ ନାମ ୩୨ ଅକ୍ଷର ଅର୍ଥ ଉତ୍କଳର ଭକ୍ତମାନଙ୍କୁ ଶିକ୍ଷା ଦିଅନ୍ତି ।

ପଞ୍ଚଶାଖା ଦିବାକର ଦାସ ପ୍ରଭୃତଙ୍କ ମତରେ ମର୍ତ୍ତ୍ୟବୃନ୍ଦାବନରେ ରାଧା ଓ ଗୋପୀଗଣ ସହ କୃଷ୍ଣଚନ୍ଦ୍ରଙ୍କର ରତ ପରକୀୟା ରତ । ସେହି ରତ ନତ୍ୟରେ ପରକୀୟା ନୁହେଁ, ତାହା ସ୍ୱକୀୟା । ମର୍ତ୍ତ୍ୟ ରାଧା ଓ କୃଷ୍ଣ ନତ୍ୟ ରାଧା ଓ କୃଷ୍ଣ ଅଂଶ ସମ୍ଭୂତ । ସେ ଦୁହେଁ ପୂର୍ଣ୍ଣ ନୁହନ୍ତି । ପୁରୀଧାମର ଜଗନ୍ନାଥ ସ୍ୱୟଂ ନତ୍ୟ ରାଧା ଓ କୃଷ୍ଣ ।

ଯେପର୍ଯ୍ୟନ୍ତ ମର୍ତ୍ତ୍ୟଜ୍ଞାନ ବିଦ୍ୟମାନ, ଯେ ପର୍ଯ୍ୟନ୍ତ ସଂସାର ପ୍ରତି ଆସକ୍ତିର ସତ୍ତା ଉପସ୍ଥିତ, ସେ ପର୍ଯ୍ୟନ୍ତ ପରକାତ୍ମାତ୍ୱ ପ୍ରଶଂସ୍ୟ । ଯେତେବେଳେ ମର୍ତ୍ତ୍ୟଜ୍ଞାନ ଲୁପ୍ତ ହୁଏ, ସଂସାର ଭାବରେ ପୂର୍ଣ୍ଣ ଅନାସକ୍ତି ସ୍ୱତଃ ଆସିଯାଏ, ସେତେବେଳେ ସେ ନିତ୍ୟ ସୁଖ ଅନୁଭବ କରେ, ସେତେବେଳେ ମର୍ତ୍ତ୍ୟର ପରକାତ୍ମାତ୍ୱ ନିତ୍ୟରେ ସ୍ୱକାତ୍ମାରୂପ ଧାରଣ କରେ ।

ପ୍ରତାପରାଜାଙ୍କ ମୃତ୍ୟୁପରେ ପ୍ରାୟ ୧୫୪୧ ରୁ ୧୫୪୬ ଅବ୍ଦରେ ଅଚ୍ୟୁତାନନ୍ଦ ସ୍ୱଶିଷ୍ୟଗଣଙ୍କ ସହ ସ୍ଥାନବିଶେଷ ଭ୍ରମଣ କରି କଟକ ଜିଲ୍ଲାର ସାଇଲୋ ପ୍ରଗଣା ଅନ୍ତର୍ଗତ ବଡ଼ମୂଳ ଗ୍ରାମରେ ସାଇବିର ପ୍ରଗଣାନ୍ତର୍ଗତ କୁଣ୍ଡବଳଦାରେ ଓ ହରିହରପୁର ଅନ୍ତର୍ଗତ ଧାନକୁଡସାହାଜପୁରରେ ମଠ ଅର୍ଥାତ୍ ସ୍ୱଧର୍ମ ପ୍ରଚାରର ପ୍ରଧାନ କେନ୍ଦ୍ରଗୁଡ଼ିକ ସ୍ଥାପନ ପୂର୍ବକ ସ୍ୱଗ୍ରାମନିକଟବର୍ତ୍ତୀ ନିବମାଳ ବା ନେମାଳକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ଅଧୁନା ନେମାଳରେ ଅବସ୍ଥାନ କରି ସେ ନିଜର ଧର୍ମମତ ପୂର୍ଣ୍ଣରୂପରେ ଲୋକମାନଙ୍କ ମଧ୍ୟରେ ପ୍ରଚାର କରିଥିଲେ । ଏହି ସମୟରେ ସେ ଉତ୍କଳର ସର୍ବତ୍ର ପରିଚିତ ହୋଇଥିଲେ । କାରଣ ତାଙ୍କର ଗୋପାଳ ଶିଷ୍ୟମାନେ ଉତ୍କଳର ସର୍ବାଂଶରେ ତଦ୍ଧର୍ମ ଗୋପାଳମାନଙ୍କ ମଧ୍ୟରେ ପ୍ରଚାର କରିଥିଲେ । ତାଙ୍କର ଖ୍ୟାତି ଓ ଗୁଣଗ୍ରାମରେ ଆକୃଷ୍ଟ ହୋଇ ଅଡ଼ଙ୍ଗଗଡ଼ର ରାଜା ରଘୁରାମ ଚମ୍ପତିରାୟ ତାଙ୍କର ରୂପବତୀ ଓ ଗୁଣବତୀ କନ୍ୟା ଚମ୍ପାବତୀଙ୍କୁ ବିବାହ ଦେଇଥିଲେ । କିମ୍ବଦନ୍ତୀରୁ ପ୍ରକାଶ ଯେ ସେସମୟରେ ନେମାଳ ଓ ତତ୍ନିକଟବର୍ତ୍ତୀ ସ୍ଥାନମାନ ଅଡ଼ଙ୍ଗ ରାଜାଙ୍କ ଅଧୀନ ଥିଲା । ଅଚ୍ୟୁତାନନ୍ଦଙ୍କୁ କନ୍ୟା ପ୍ରଦାନ ବିଷୟରେ ସ୍ୱପ୍ନାଦେଶ ହେବା ଲୋକ ମୁଖରୁ ଜଣାଯାଏ । ଅଚ୍ୟୁତାନନ୍ଦ ପ୍ରାୟ ୩୫ ବର୍ଷଠାରୁ ୪୦ ବର୍ଷ ବୟଃକାଳ ମଧ୍ୟରେ ବିବାହ କରିବା ଅନୁମିତ ହେଉଅଛି । ଲୋକେ କହିପାରନ୍ତି ଯେ କି ନିମିତ୍ତ ସନ୍ନ୍ୟାସୀ ଅଚ୍ୟୁତାନନ୍ଦ ଗୃହସ୍ଥାଶ୍ରମ ଅବଲମ୍ବନ କଲେ ?

ଧର୍ମ କେବଳ ଯେ ସନ୍ନ୍ୟାସୀମାନଙ୍କର ତାହା ନୁହେଁ । ଧର୍ମ ଗୃହୀ ସନ୍ନ୍ୟାସୀ ଉଭୟଙ୍କର । କେବଳ ସନ୍ନ୍ୟାସୀଙ୍କ ଦ୍ୱାରା ଧର୍ମ ଅବଲମ୍ବିତ ହେଲେ ଧର୍ମର ପ୍ରଚାର ହୋଇପାରେ ନାହିଁ । ଜନସାଧାରଣରେ ଧର୍ମ ଭାବର ପ୍ରଚାର ନିମିତ୍ତ, ଧର୍ମକୁ ଉଜ୍ଜୀବିତ କରିବା ନିମିତ୍ତ ଧର୍ମ ଭାବରେ ସଂସାରକୁ ଶାନ୍ତି ପ୍ରଦାନ କରିବା ନିମିତ୍ତ, ଧର୍ମଗ୍ଲାନି କାଳରେ ବିଶ୍ୱ ସଂସାରକୁ ହିଂସା ମିଥ୍ୟା ଆଦି ଯାବତୀୟ ଅମଙ୍ଗଳରୁ ରକ୍ଷା କରିବା ନିମିତ୍ତ ବିଶ୍ୱପ୍ରାଣ ଜଗତ୍‌ଗୁରୁଙ୍କର ହୃଦୟ ଉପଯୁକ୍ତ ବିଧାନରେ ସ୍ୱତଃ ପ୍ରବୃତ୍ତ ହୁଏ । ଏଥିହେତୁ ଚୈତନ୍ୟଚନ୍ଦ୍ର ନିତ୍ୟାନନ୍ଦଙ୍କୁ ଗୃହସ୍ଥାଶ୍ରମ ଅବଲମ୍ବନ କରି ଧର୍ମଭାବ ସଂରକ୍ଷଣ ପୂର୍ବକ ଆଦର୍ଶ ଗୃହସ୍ଥଜୀବନ ପ୍ରଦର୍ଶନ ନିମିତ୍ତ ଆଦେଶ ପ୍ରଦାନ କରିଥିଲେ । ଚୈତନ୍ୟଚନ୍ଦ୍ରଙ୍କ ସନ୍ନ୍ୟାସଗ୍ରହଣ ପରେ ଅନେକେ ଗୃହତ୍ୟାଗ କରି ତଦ୍ଧର୍ମାବଲମ୍ବୀ ହୋଇଥିଲେ, କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ ପୂର୍ଣ୍ଣଭାବରେ ଧର୍ମ ସଂରକ୍ଷଣ କରି ନ ପାରି ପଥଭ୍ରଷ୍ଟ ହୋଇଥିଲେ । ଗୃହସ୍ଥାଶ୍ରମରେ ରହି ଲୋକେ ବୈଷ୍ଣବ-ଧର୍ମ ପ୍ରତିପାଳନ କରନ୍ତୁ ଏହି ଅଭିପ୍ରାୟରେ ଆଦର୍ଶ ଗୃହୀ ବୈଷ୍ଣବର ନିଦର୍ଶନ ସ୍ୱରୂପ ସେ ନିତ୍ୟାନନ୍ଦଙ୍କୁ ଉତ୍ସର୍ଗ କରିଥିଲେ । ଶ୍ରେଷ୍ଠ ଆଚରଣ ଅନୁରୂପ ଆଚରଣ କରଣୀୟ । ଏହି ଶିକ୍ଷା ଲୋକମାନଙ୍କ ମଧ୍ୟରେ କାର୍ଯ୍ୟ କରିଥିଲା । ଲୋକେ ଗୃହରେ ଥାଇ ବୈଷ୍ଣବଧର୍ମ ଯଥାଯଥ ପ୍ରତିପାଳନ କରିପାରିଥିଲେ । ଅଚ୍ୟୁତାନନ୍ଦ ମଧ୍ୟ ଜଗତକୁ ଶିକ୍ଷାଦେବା ନିମିତ୍ତ ସଂସାରରେ ଥାଇ ସଂସାରର କ୍ରିୟା କଳାପରେ ମୁଗ୍ଧ ନ ହୋଇ, ବିଷୟୀ ଥାଇ ବିଷୟରେ ଆକୃଷ୍ଟ ନ ହୋଇ ଆଦର୍ଶ ଧାର୍ମିକଜୀବନ ଲୋକସମକ୍ଷରେ ପ୍ରଦର୍ଶନ ନିମିତ୍ତ ଗୃହସ୍ଥାଶ୍ରମ ଅବଲମ୍ବନ କରିଥିଲେ । ବିକାରହେତୌ ସତି ବିକ୍ରିୟନ୍ତେ । ଯେଷାଂନ ଚେତାଂସି ତ ଏବ ଧୀରାଃ । ଯେ ଲୋକ-ମାନଙ୍କ ମଧ୍ୟରେ ରହି ସେମାନଙ୍କର ଦୁଃଖ ସୁଖରେ ସେମାନଙ୍କୁ ଉପଦେଶ ଦେଇ ସେମାନଙ୍କର ଐହିକ ଓ ପାରତ୍ରିକ ମଙ୍ଗଳ ସାଧନରେ ପଥପ୍ରଦର୍ଶକ ହୁଅନ୍ତି, ସେ ପ୍ରକୃତ ମହାପୁରୁଷ । ଅଚ୍ୟୁତା-

ନନ୍ଦଙ୍କ ସ୍ତ୍ରୀ ଚମ୍ପାବତୀ ବିଦୁଷୀ ଥିଲେ । ସେ ଅନେକ ତତ୍ତ୍ୱକଥା ଅଚ୍ୟୁତାନନ୍ଦଙ୍କୁ ପ୍ରଶ୍ନ କରୁଥିଲେ । ସେ ମଧ୍ୟ ସ୍ୱାମୀଙ୍କ ସନ୍ଦେହ ଦୂରକରି ତାଙ୍କୁ ତତ୍ତ୍ୱ ଦର୍ଶାଉଥିଲେ । ତାଙ୍କର ଏକମାତ୍ର ପୁତ୍ର ସନ୍ତାନ ଜାତ ହୋଇଥିଲେ । ସେ ବ୍ରଜଗଦାଧର । ମରେ ଖ୍ୟାତ ଲଭିଥିଲେ । ପିତାଙ୍କର ସେ ଉପଯୁକ୍ତ ପୁତ୍ର ଥିଲେ । ସେ ବ୍ରଜବିହାର ନାମକ ଏକ ଅତି ଉପାଦେୟ ଗ୍ରନ୍ଥ ରଚନା କରି ଲୋକଙ୍କର ଜ୍ଞାନଚକ୍ଷୁ ଉନ୍ମୀଳନ କରି ଯାଇଅଛନ୍ତି । ମହାପୁରୁଷ ଅଚ୍ୟୁତାନନ୍ଦ ପୁରୀଧାମକୁ ପ୍ରତିବର୍ଷ ରଥଯାତ୍ରାକାଳରେ ଗମନ କରୁଥିଲେ । ତାଙ୍କର ମହିମା ସର୍ବତ୍ର ପ୍ରଚାର ଲଭିଥିଲା । ତାଙ୍କର ପୁରୀ ଧାମରେ ଅବସ୍ଥାନକାଳରେ ସେ ରଣପୁରର ତତ୍ରତ୍ୟରାଜା ପଦ୍ମନାଭ ନରେନ୍ଦ୍ରଙ୍କ ଦ୍ୱାରା ଅନୁରୁଦ୍ଧ ହୋଇ ରଣପୁରକୁ ଯାଇ-ଥିଲେ ଓ ରାଜା ପଦ୍ମନାଭ ନରେନ୍ଦ୍ରଙ୍କ ଭକ୍ତିରେ ଆବଦ୍ଧ ହୋଇ କିଛିକାଳ ସେ ସ୍ଥାନରେ ଅବସ୍ଥାନ କରିଥିଲେ । ଇତିପୂର୍ବେ ସେ ବିପ୍ର ନାରାୟଣଦାସଙ୍କ କୃତ ହରିବଂଶ ପାଠକରିବା ନିମିତ୍ତ କୌଣସି ଲୋକଙ୍କୁ ମାଗିଥିଲେ । ସେ ତାହା ନ ଦେବାରୁ ମହା-ପୁରୁଷ ୭ଖଣ୍ଡିଆ ହରିବଂଶ ଲେଖିବାରେ ପ୍ରବୃତ୍ତ ହୋଇଥିଲେ । ରଣପୁରରେ ଅବସ୍ଥାନ କରିବା ସମୟରେ ହରିବଂଶ ଲେଖିବା ବିଷୟ ଉକ୍ତ ଗ୍ରନ୍ଥରେ ଲିଖିତ ଅଛି । ସେ ଉକ୍ତଗ୍ରନ୍ଥକୁ ପଦ୍ମନାଭ ନରେନ୍ଦ୍ରଙ୍କୁ ଉପହାରଦେବା କଥା ମଧ୍ୟ ଲୋକ ମୁଖରେ ପ୍ରକାଶ ପାଏ । ପଦ୍ମନାଭ ନରେନ୍ଦ୍ର ଜଣେ ବିଦ୍ୱାନ, ସାହିତ୍ୟ ରସିକ, ଓ ଧାର୍ମିକ ରାଜାଥିଲେ । ପଦ୍ମନାଭ ନରେନ୍ଦ୍ର ତେଲଙ୍ଗା ମୁକୁନ୍ଦ-ଦେବଙ୍କ କନ୍ୟାଙ୍କୁ ବିବାହ କରିଥିଲେ ବୋଲି ରଣପୁର ଇତିହାସରୁ ପ୍ରକାଶ ପାଏ ।

ସେ କିଛିକାଳ ରଣପୁରରେ ରହି ନେମାଳଗ୍ରାମକୁ ପ୍ରତ୍ୟାବର୍ତ୍ତନ କରିଥିଲେ ଓ ସ୍ୱ ଜୀବନର ଶେଷ ସମୟ ସେହିସ୍ଥାନରେ ଅତି-ବାହିତ କରିଥିଲେ । ତାଙ୍କ ଜୀବନର ପ୍ରୌଢ଼ାବସ୍ଥା ଓ ବୃଦ୍ଧା-

ସ୍ଥାରେ ସେ ଏହି ନେମାଳ ଗ୍ରାମରେ ରହି ଶିଷ୍ୟମାନଙ୍କୁ ଉପଦେଶ ଦେଉଥିଲେ ଓ ଗ୍ରନ୍ଥମାନ ରଚନା କରୁଥିଲେ ।

ଅଣାକାରସଂହିତାର ଉପସଂହାରରୁ ଜଣାଯାଏ ଯେ ୩୬ ଖଣ୍ଡ ସଂହିତା, ୭୮ଖଣ୍ଡ ଗୀତା, ବଂଶାନୁଚରିତ ଯଥା ହରିବଂଶାଦି ୪୨୮ଣ୍ଡ, ଉପବଂଶ ଚରିତ ୧୨ଖଣ୍ଡ ଏବଂ ଭବିଷ୍ୟ ଖ୧୦୦ଣ୍ଡ ଓ ପଦ ପଦ୍ୟାବଳୀ ସହିତ ସର୍ବମୋଟରେ ଏକଲକ୍ଷ ଗ୍ରନ୍ଥ ରଚନା କରିଥିଲେ ।

ଛତିଶ ସଂହିତା ଅଠସ୍ତରୀ ଗୀତା ବଂଶାନୁ ସପ୍ତବିଂଶରେ ।
ଉପବଂଶାନୁ ଦ୍ୱାଦଶଖଣ୍ଡ ଯେହ୍ନ ଭବିଷ୍ୟ ଶତଖଣ୍ଡରେ ।
ପଦ ପଦ୍ୟାବଳୀ ଲକ୍ଷେକ ଯେ ଗ୍ରନ୍ଥ ସବୁ ଶ୍ରୀକୃଷ୍ଣ ମହିମା ।
ତୋ ଆଗେ କହିଲୁଁ ବିରଜକୁମର ବ୍ରହ୍ମସାରସ୍ୱତ ସୀମା ।

ଏଥିରୁ ସ୍ପଷ୍ଟ ପ୍ରତିପନ୍ନ ହେଉଅଛି ଯେ ଅଣାକାରସଂହିତା ମହାପୁରୁଷଙ୍କ ଶେଷ ଲେଖା । ଆମ୍ଭେମାନେ ସ୍ଥାନ ବିଶେଷରେ ମହାପୁରୁଷଙ୍କ ପ୍ରାୟ ଗ୍ର୭୦୦ନ୍ଥ ସ୍ୱଚକ୍ଷୁରେ ଦେଖିଅଛୁଁ ।

ମହାପୁରୁଷଙ୍କ ସଂହିତା ଆଦି ଯାହା ଆମ୍ଭେ ପାଇଅଛୁଁ, ତାହାର କେତେକ ଖଣ୍ଡର ମାତ୍ର ନାମୋଲ୍ଲେଖ କଲୁଁ ;—ଗୁପ୍ତ, ଜ୍ୟୋତି, ଅନାହତ, ଅକଳିତ, ଅବାଡ, ବ୍ରହ୍ମ ବଟ, ଯନ୍ତ୍ର, ତନ୍ତ୍ର ମନ୍ତ୍ରସଂହିତା, ଅନନ୍ତଗୋଇ, ତତ୍ତ୍ୱବୋଧିନୀ, ବ୍ରହ୍ମଶାଙ୍କୁଳ, ଗରୁଡସଂହିତା, ଗୁରୁଖାନ ଓ ଅନେକ ଆଗତ ଭବିଷ୍ୟତକଥା ସେ ମାଳିକାମାନଙ୍କରେ ଉଲ୍ଲେଖ କରି ଅଛନ୍ତି । 'ପାଞ୍ଚ ସାତଜଣ ବୈଷ୍ଣବ ମିଳଣ ଗତ ଆଗତ କହନ୍ତି' ଏହି ଶୂନ୍ୟସଂହିତାର ପଦରୁ ଉକ୍ତ ଭବିଷ୍ୟତ କଥା ପ୍ରକାଶ ପାଉଅଛି ।

ଅଚ୍ୟୁତାନନ୍ଦ ସ୍ୱଧର୍ମ ତତ୍ତ୍ୱ ଜନସାଧାରଣରେ ପ୍ରକାଶ କରିବାରେ ନିଷେଧ କରିଥିଲେ । ଯୋଗ ବିଷୟକ କଥା ଜନସାଧାରଣରେ

ପ୍ରକାଶ ଯୋଗଶାସ୍ତ୍ରମାନଙ୍କରେ ନଥେଷ୍ଟ ଅଛି । ଶିବସଂହିତା ଘେରଣ୍ଡସଂହିତା ଅଷ୍ଟାବକ୍ରସଂହିତା ଆଦି ପାଠକଲେ ଏହା ସ୍ପଷ୍ଟ ପ୍ରତିପନ୍ନ ହୁଏ । ଏହା ସାଧନା ଦ୍ୱାରା ଅନୁଭବର ବିଷୟ, ଜନ-ସାଧାରଣରେ ପ୍ରଚାରର ବିଷୟ ନୁହେଁ । ପୂର୍ବ କଥିତ ଶୂନ୍ୟସ୍ଥାନର ଅଧିବାସୀ ବ୍ରହ୍ମ ଯାହାଙ୍କୁ ନିରାକାର ରୂପରେ ଅଚ୍ୟୁତ କହିଅଛନ୍ତି ତାହା ଯୋଗଗମ୍ୟ ତଦ୍ୱିଷୟକ ପ୍ରଚାର କେଯ୍ୱାରେ କେବଳ ଲୋକେ ଉପହାସ କରିବେ ଏହି ଆଶଙ୍କା କରି ଅଚ୍ୟୁତ ସ୍ୱଶିଷ୍ୟମାନଙ୍କୁ ଶପଥ କରାଇଥିଲେ । ସେଥିଯୋଗୁଁ ତାଙ୍କ ଗ୍ରନ୍ଥ ଜନସାଧାରଣରେ ବିହିତ ନୁହେଁ ।

ମୃତ୍ୟୁଞ୍ଜୟ ରଥେ କହିଅଛନ୍ତି "ପ୍ରତ୍ୟେକ ଉପଦେଶ କାଳରେ ବ୍ରାହ୍ମଣ ପଣ୍ଡିତଙ୍କ ଉପହାସ ଆଶଙ୍କାରେ ସେ ସବୁ ପ୍ରକାଶ ନ କରିବା ନିମିତ୍ତ ଶପଥ କରାଉଥିଲେ ।" ରଥଙ୍କର ଏ ଉକ୍ତି ସମୀଚୀନ ନୁହେଁ । କାରଣ ସେ ସମୟରେ ସେ ବ୍ରାହ୍ମଣଙ୍କଦ୍ୱାରା ପୂଜାର ପାତ୍ର ହୋଇଥିଲେ ଆଉ ଉପହାସର ପାତ୍ର ନଥିଲେ । ସେ 'ଯୋଗସିଦ୍ଧା' ବୋଲି ବ୍ରାହ୍ମଣମାନେ ତାଙ୍କ ପରୀକ୍ଷା କାଳରେ ତାଙ୍କୁ କହିଥିଲେ ।

ସେ ପ୍ରଚ୍ଛନ୍ନ ବୌଦ୍ଧଥିଲେ ବୋଲି ଯାହା ନଗେନ୍ଦ୍ରନାଥ ବସୁ ତାଙ୍କ Modern Bitsudhism and followers in Orissa ରେ କହିଅଛନ୍ତି ତାହା ଅଯଥାର୍ଥ ।

ସେ କହିଅଛନ୍ତି—"Though they were Sincere Budhists, being votaries of Budha, yet they found it necessary nay, unavoidable to keep their Budhistic frames of mind hidden under the guise of vaisnavism for fear of the persecution by Brahmans and kings, It is for this that we find the

following lines in Achyutananda's Cunya Samhi ta. "କଳିଯୁଗେ ବୌଦ୍ଧରୂପେ ନିଜରୂପ ଗୋପ୍ୟ" = It is desirable in Kaliyuga that the followers of Budha should be disguised. ଶୂନ୍ୟସଂହିତାର ଉପରୋକ୍ତ ପଦର ଏପରି ବିପରୀତ ଅର୍ଥକରି ବସୁ ମହାଶୟ ଏରୂପ ସିଦ୍ଧାନ୍ତରେ ଉପନୀତ ହୋଇଅଛନ୍ତି । ବସୁ ମହାଶୟ ଓଡ଼ିଆ ପଦର ଯେ ଅର୍ଥ ବୁଝିଲେ ତାହା କୌଣସି ପ୍ରକାରେ ହେଲେ ସମର୍ଥିତ ହୋଇ ନ ପାରେ । ତାହାର ପ୍ରକୃତ ଅର୍ଥ ଏହି :— କଳିଯୁଗରେ ଭଗବାନ୍ ବୌଦ୍ଧରୂପ ବା ଜଗନ୍ନାଥ ରୂପରେ ନିଜ ରୂପ ଗୋପନ କରିଅଛନ୍ତି ।

ସେ ବୌଦ୍ଧଥିଲେ ବୋଲି ଯେ ତତ୍ତ୍ୱମାନ ବ୍ରାହ୍ମଣଙ୍କଠାରୁ ଗୋପନ ରଖିବା ଅଭିପ୍ରାୟରେ ଶିଷ୍ୟଙ୍କୁ ଶପଥ ଧରାଇଥିଲେ ତାହା ସମ୍ପୂର୍ଣ୍ଣ ଭ୍ରମାତ୍ମକ ।

ଏହି ଶପଥ ପକାକୁ ଭୟେ ଯେ ମହାପୁରୁଷଙ୍କ ସଂକୀର୍ଣ୍ଣତା ବୋଲି କହିଅଛନ୍ତି ତାହା ସମ୍ପୂର୍ଣ୍ଣ ଅନୁଚିତ ହୋଇଅଛି । ଲୋକ ଚଞ୍ଚଳମତି, କାଳେ ଅପାତ୍ରରେ ତତ୍ତ୍ୱ ପ୍ରଦାନ କରିବ ଏହି ଆଶଙ୍କାରେ ସେ ତାକୁ ନିଷେଧ କରିଥିଲେ ।

"ମୋହ ଶପଥ ତୋତେ ଆରେ ବାବୁ
ଏ ଭଜନ ଶୂନ୍ୟ ମନ୍ତ୍ରେ ନ ଦେବୁ
କିଏ କାହାରି ମିଥ୍ୟା ଯେ ସଂସାର
ଆପେ ତରିଲେ ଆଉ କେ କାହାର"

ସେ ଯେ ପ୍ରକୃତ ବୈଷ୍ଣବଥିଲେ ତହିଁରେ ଅଣୁମାତ୍ର ସନ୍ଦେହ ନାହିଁ । ତାହାର ନିଦର୍ଶନ ସ୍ୱରୂପ କେତେକ ପଦ ଗୁରୁଭକ୍ତିଗୀତା ୬ଷ୍ଠଖଣ୍ଡରୁ ଉଦ୍ଧାର କଲୁ ।

"ପୂର୍ବଦଗର ଗୋପୀମାନ—ଶୁଣ ହେ ମଥୁର ଦବନ
ଲଳିତା ବୃନ୍ଦା ମଧୁବତୀ—ଚମ୍ପାଦସୃଣା ମଦନାବତୀ
ସୁରେଖା ନିପୁରଯେ ପୁଣ—ଅଛନ୍ତି ଯେ ଅଷ୍ଟଦଳେଣ
ହରେ ଶବଦ ପୂର୍ବେ ବସେ—ରାମ ଶବଦେ ଈଶାନସେ
କୃଷ୍ଣ ଶବଦ ଉତ୍ତରେଣ—ଶ୍ୟାମ ଶବଦ ବାୟୁବ୍ୟେଣ
ହ୍ରାଁ ଯେ ପଶ୍ଚିମ ଭାଗରେ—ଶ୍ରୀଁ ଯେ ନୈଋତ ଦଗରେ,
କ୍ଲୀଁ ଯେ ପୂର୍ବେ ପରକାଶ । କୃଷ୍ଣାୟ ଈଶାନରେ ଘୋଷ ।
ଗୋବିନ୍ଦାୟ ଯେ ଉତ୍ତରେଣ । ଗୋପୀଜନ ଯେ ବାୟୁବ୍ୟେଣ
ବଲ୍ଲ ପଶ୍ଚିମ ଦଗେ ବସେ । ଭୟ ଯେ ନୈଋତେପ୍ରକାଶେ

ସ୍ୱାହା ଦକ୍ଷିଣେଦଗେ ପୁଣ । ନମ ଅଗ୍ନିକୋଣେଣ ଜାଣ ।
ଯେ ଜଗନ୍ନାଥ ମିଶ୍ର ନାମ । ପୁରନ୍ଦର ସେ ଇନ୍ଦ୍ରସମ ।
ଯଶୋଦା ନାମ ଯେହୁ ହୋଇ । ନଦୀଆ ଦେଶେ ଶଚୀ ସେହୁ
ଯେ କୃଷ୍ଣ ଗୋପପୁରେ ଜାତ । ସେ ହେଲେ ଶଚୀରଯେ ସୁତ
ସତ୍ୟଭାମା ଯେ ହୋଇଥିଲେ । ନଦୀଆ ବିଷ୍ଣୁପ୍ରିୟା ହେଲେ

ଇତ୍ୟାଦି । ଇତ୍ୟାଦି ।—

ମହାପୁରୁଷଙ୍କ କୃତ ବିଷ୍ଣୁଳକ୍ଷ ପଦ୍ୟାବଳୀ, ଗୁରୁଭକ୍ତିଗୀତା, ଅଷ୍ଟଗୁଜ୍ଜରୀ ଓ ଅନ୍ୟାନ୍ୟ ଗ୍ରନ୍ଥମାନ ପାଠକଲେ ସ୍ପଷ୍ଟ ପ୍ରତିପନ୍ନ ହେବ ଯେ ସେ ଜଣେ ପ୍ରଧାନ ବୈଷ୍ଣବ ଥିଲେ । ଗୁରୁଭକ୍ତି-ଗୀତାର ଦ୍ୱିତୀୟ ତୃତୀୟ ଖଣ୍ଡର ବର୍ଣ୍ଣିତ ବିଷୟମାନ ଶୁଣିଲେ ପାଠକମାନେ ଏ ବିଷୟରେ ସ୍ଥିର ସିଦ୍ଧାନ୍ତରେ ଉପନୀତ ହେବେ ।

ଦ୍ୱିତୀୟଖଣ୍ଡ ।—କର୍ମବିଧି, ପୂଜାବିଧି, ତିଳକ ବିଧି, ଭଜନ ବିଧି, ମାଳାସଂଖ୍ୟାନିରୂପଣ, ସ୍ନାନଯୋଗ, ଶ୍ରଦ୍ଧାବିଧି, ଜ୍ୟୋତିବିଧି, ସଗୁଣ ନିର୍ଗୁଣ କଥନ, ତତ୍ତ୍ୱବୋଧନ, ତତ୍ତ୍ୱଭେଦକଥନ, ମହୋତ୍ସବ ବିଧି, ମନ୍ତ୍ରଭେଦ, ପୂଜାବିଧି ଇତ୍ୟାଦି ।

ତୃତୀୟଖଣ୍ଡ ।--ଶିଷ୍ୟଉଦ୍ଧାରଣ, ଅନ୍ନ ଫଳ କଥନ, ଶିଷ୍ୟଗୁରୁଙ୍କୁ ପରମଗୁରୁ ସମ୍ଭାଷଣ, ବୈରାଗ୍ୟ ଲକ୍ଷଣ, ଗୁରୁ ପୂଜନ, ବସ୍ତ୍ରଦାନ, ଗୁରୁପ୍ରଣାଳୀ, ସୁଜନଲକ୍ଷଣ, ସାଧୁଲକ୍ଷଣ, ଦାସଲକ୍ଷଣ, ମହନ୍ତ-ଲକ୍ଷଣ, ମହାତ୍ମାଲକ୍ଷଣ, ନବଧା ଭକ୍ତି, ଶ୍ରୀକୃଷ୍ଣ ଗୋପଲୀଳା, ରାଧାକୃଷ୍ଣ ମିଳନଚରିତ, ଅଷ୍ଟପ୍ରହର ସଖୀ ସେବା, ରସଗୁଣ, ଗୋପାଳ ଗାବ ଅଷ୍ଟଦଳ ବର୍ଣ୍ଣନ, ଅଷ୍ଟ ପ୍ରହର ପୁଷ୍ପସେବା, ରହାସ ନିର୍ଣ୍ଣୟ-ବର୍ଣ୍ଣନ, ଶିବ ପଞ୍ଚାକ୍ଷର, ନାରାୟଣ ମନ୍ତ୍ରମୂର୍ତ୍ତି, ବ୍ରହ୍ମ ସାବଜୀ, ଦେବ-ଦେବୀ ମନ୍ତ୍ରମୂର୍ତ୍ତି, ଗଣପତି ମନ୍ତ୍ରମୂର୍ତ୍ତି, ଏକାକ୍ଷର, ରାଧାରୂପ ବର୍ଣ୍ଣନ, ଗୋପାଳ ମନ୍ତ୍ର, ସଖୀ ସଖା ଲୀଳାକଥନ, ମଣୋହ୍ର ଭେଦ, ମାନସୀ ସେବାଧ୍ୟାନ, ଇତ୍ୟାଦି ।

ଅଚ୍ୟୁତାନନ୍ଦଙ୍କର ଐଶ୍ୱର୍ଯ୍ୟ ଭକ୍ତି ଜ୍ଞାନମିଶ୍ରା ଥିଲେହେ ସେ ତାଙ୍କର ପରଜୀବନରେ ଲମ୍ବୋଉର କୃଷ୍ଣ ଲୀଳାସ୍ୱାଦନରେ ସର୍ବଦା ବିଭୋର ଥିଲେ । ତାଙ୍କର ସେବା ପ୍ରକୃତରେ କହିବାକୁଗଲେ ଅନ୍ତରଙ୍ଗା, ତାଙ୍କର କ୍ରିୟା କଳାପ ଅନ୍ତର୍ମୁଖ ଥିଲା । ଏହି କାଳରେ ସେ ତାଙ୍କର ପ୍ରିୟତମ ପୁଣି ବ୍ରଜ ଗଦାଧରଙ୍କର ଅତ୍ୟଧିକ ତନ୍ତ୍ରମିଶ୍ରା ଯୋଗଚର୍ଯ୍ୟାରେ କ୍ଷୁବ୍ଧ ହୋଇ ତାହାଙ୍କୁ ପରିହାର କରିଥିଲେ । ଉତ୍କଳର ଗୋପମନ୍ତ୍ରଲୀର ଗୁରୁ ଓ ପ୍ରାଣସ୍ୱରୂପ ଅଚ୍ୟୁତାନନ୍ଦ ଗୃହସ୍ଥାଶ୍ରମରେ ରହି ନିଜର ଆର୍ଥିକ ଅବସ୍ଥା ଉନ୍ନତକଲେହେଁ ଆଦୌ ଦୃଷ୍ଟି ପ୍ରଦାନ କରି ନଥିଲେ । ସେ ଗୃହରେ ଥାଇ ଜନକ ମହର୍ଷିଙ୍କପରି ନିର୍ଲିପ୍ତଭାବରେ ଓ ସନ୍ନ୍ୟାସୀଙ୍କପରି ନିଃସ୍ୱଭାବରେ ଜୀବନ ଯାତ୍ରା ନିର୍ବାହ କରୁଥିଲେ । କିମ୍ବଦନ୍ତୀ ପ୍ରଚଳିତ ଅଛି ଦିନେ ମହାପୁରୁଷ ପ୍ରାତଃକାଳରେ ବାଡ଼ିରେ କାକୁଡ଼ି କଷିଟିଏ ଦେଖିଥିଲେ । ସେ ସେଦିନ ପୂଜାରେ ବସିଲାବେଳେ ସେ କାକୁଡ଼ି କଷିଟିକୁ ପୂଜାପାଇଁ ଆଣିବାକୁ ନିଜସ୍ତ୍ରୀଙ୍କୁ କହିଥିଲେ କିନ୍ତୁ ସ୍ତ୍ରୀ ଯାଇ ଦେଖିଲେ ଯେ ଗଛରେ କାକୁଡ଼ିକଷିଟି ନାହିଁ— ଡେମ୍ଫଟି ଝୁଲୁଅଛି । ସେ ଫେରିଆସି ସେ କଥା ମହାପୁରୁଷଙ୍କୁ

ଜଣାଇଲେ । ତହୁଁ ମହାପୁରୁଷ ନିଜପୁଅ ବ୍ରଜଗଦାଧର ତାହା ଖାଇଥିବାର ସନ୍ଦେହକରି ତାହାଙ୍କୁ ଡାକି ପଚ୍ଚାରିଲେ ବ୍ରଜ-ଗଦାଧର କହିଲେ ମୁଁ ବର୍ତ୍ତମାନ ଗଛରେ କାକୁଡ଼ି ଦେଖିଆସିଲି ମାଙ୍କ ଖୋଜିବାରେ ଭୁଲ ହୋଇଥିବ । ତହୁଁ ପୁଣି ମହାପୁରୁଷଙ୍କ ସ୍ତ୍ରୀ କାକୁଡ଼ିଗଛ ପାଖକୁ ଯାଇ ଦେଖିଲେ ଯେ ଗଛରେ କାକୁଡ଼ି ଝୁଲୁଛି । ସେ ତାହା ଆଣି ମହାପୁରୁଷଙ୍କୁ ଦେଲେ । ମହାପୁରୁଷ ଧ୍ୟାନସ୍ଥ ହୋଇ ସମସ୍ତ ବିଷୟ ଅବଗତ ହୋଇଥିଲେ ଯେ ବ୍ରଜଗଦାଧର କାକୁଡ଼ି ଖାଇ ନିଜର ଯୋଗସାଧନା ବଳରେ ପୁନର୍ବାର କାକୁଡ଼ି ସୃଷ୍ଟି କରିଅଛି । ଏହି ହଠ ଯୋଗଦ୍ୱାରା ବିଭୂତି ଦର୍ଶାଇବା ବୈଷ୍ଣବର କାର୍ଯ୍ୟ ନୁହେଁ । ଏହାଦ୍ୱାରା କେବଳ ଲୋକସମ୍ମାନ ଓ ନିଜର ଐଶ୍ୱର୍ଯ୍ୟଲିପ୍ସା ହିଁ ବୃଦ୍ଧି ପାଏ । ତହୁଁ ବ୍ରଜଗଦାଧରଙ୍କର ଏହି କାର୍ଯ୍ୟରେ ମହାପୁରୁଷଙ୍କର ମର୍ମାନ୍ତିକ ବେଦନା ହୋଇଥିଲା ଏବଂ ସେ ନିଜର ପ୍ରିୟତମ ପୁତ୍ରର ମୁଖ ଦର୍ଶନ କରିବାକୁ ନିଷେଧ କରିଥିଲେ । ବ୍ରଜଗଦାଧର ପିତାଙ୍କର ଆଦେଶ ପାଳନକରି ଗୃହତ୍ୟାଗ କରିଥିଲେ:—ନାନା ସ୍ଥାନରେ ଭ୍ରମଣ କରି କରି ଅବଶେଷରେ ଚନ୍ଦ୍ରଭାଗାକୂଳସ୍ଥ ଶାଳଶିଳ ବଟ ନିକଟରେ ଉପସ୍ଥିତ ହୋଇଥିଲେ । ସେସ୍ଥଳରେ ଗୋପାଳମାନଙ୍କୁ ନିକଟବର୍ତ୍ତୀ ଗ୍ରାମକୁ ଆହାରାର୍ଥେ ବିଦାୟ ଦେଇ ସେ ସ୍ୱୀୟାରି ସହିତ ଚନ୍ଦ୍ରଭାଗାର ବାଲୁକା ଗର୍ଭରେ ଲୀନ ହୋଇ ପିତାଙ୍କର ଦ୍ରୋହାଚରଣର ଉପଯୁକ୍ତ ପ୍ରାୟଶ୍ଚିତ କରିଥିଲେ ।

ବର୍ତ୍ତମାନ ପ୍ରଶ୍ନ ହୋଇପାରେ ମହାପୁରୁଷ କିପରି ଉତ୍କଳର ସମଗ୍ର ଗୋପାଳକୁଳ ଉପରେ ପ୍ରତିଷ୍ଠା ଲଭ କରିଥିଲେ । ଜନଶ୍ରୁତି ପ୍ରଚଳିତ ଅଛି:—ମହାପୁରୁଷ ସ୍ୱପ୍ନରେ ପ୍ରଭୁଙ୍କର ଦର୍ଶନଦ୍ୱାରା ଜ୍ଞାନ ଲଭ କରିଥିଲେ ବୋଲି ପୂର୍ବରେ କଥିତ ହୋଇଅଛି । ତହିଁ ପରେ ସେ କେତେକକାଳ ଗ୍ରାମର ଚତୁର୍ଦ୍ଦିଗସ୍ଥ ସ୍ଥାନମାନଙ୍କରେ ବାତୁଳପରି ଭ୍ରମଣ କରୁଥିଲେ । ଏକଦା ସେ

ମହାନଦୀର ତୀରଦେଶରେ ଏକାକୀ ବସିଅଛନ୍ତି ଏମନ୍ତ ସମୟରେ ଜଣେ ଗୋପାଳ ବେହେରା ସେହି ପଥ ଦେଇ ବିଷଣ୍ଣ ଚିତ୍ତରେ ଯିବାର ସେ ଦେଖିଥିଲେ । ଏହି ଜ୍ଞାନବାତୁଳ ଅଚ୍ୟୁତଙ୍କର ହୃଦୟ ତାହାର ଦୁଃଖର ବଶୀଭୂତ ହୋଇଥିଲା, ତହୁଁ ତାହାକୁ ନିଜ ସମୀପକୁ ଆହ୍ୱାନକରି ଛଳରେ ଜଳଯାଚଞ୍ଚା କରିଥିଲେ । ସେ କହିଥିଲା "ମୋର ସର୍ବନାଶ ହୋଇଛି—ମୁଁ ଆଉ ସାଧୁ ସେବା କଲେ ମୁକ୍ତ ପାଇଯିବି ।" ତାହାର ଦୁଃଖର କାରଣ ପଚାରିବାରୁ ସେ କହିଥିଲା—ତାହାର ମଇଁଷୀପାଳ ତନ୍ନତ୍ୟ ରାଜାଙ୍କର ଆଖୁକ୍ଷେତ ଖାଇ ଯାଇଅଛନ୍ତି । ତେଣୁ ରଜା କର୍ମଚାରୀଦ୍ୱାରା ତଦନ୍ତ କରାଇ ବର୍ତ୍ତମାନ ତାହାର ସର୍ବନାଶ କରିବାକୁ ଉଦ୍ୟତ । ଉଦାର ହୃଦୟ ଅଚ୍ୟୁତ ଏହି ଗୋପାଳକୁ କଳସୀ ପୂର୍ଣ୍ଣ ଜଳ ତାହାଙ୍କ ନିକଟକୁ ଆଣିବାକୁ କହିଥିଲେ । ଗୋପାଳ ତାହାଙ୍କର ଆଦେଶ ପାଳନ କରିଥିଲା । ଅଚ୍ୟୁତାନନ୍ଦ ସେହି ଜଳକୁ ଅଭିମନ୍ତ୍ରିତକରି କ୍ଷେତ୍ରରେ ସେଚନ କରିବାକୁ ଗୋପାଳକୁ ଆଦେଶ ପ୍ରଦାନ କରିଥିଲେ । ଗୋପାଳ ତଦନୁଯାୟୀ ଚକ୍ଷୁମୁଦ୍ରିତକରି କ୍ଷେତ୍ରରେ ଜଳ ସେଚନ କରିସାରି ଦେଖିଲା, ସେହି କ୍ଷେତ୍ର ପୂର୍ବଠାରୁ ଅଧିକ ଶସ୍ୟପୂର୍ଣ୍ଣ ହୋଇଅଛି । ସେହି ଗୋପାଳ ବେହେରା ତାହାଙ୍କ ମାହାତ୍ମ୍ୟ ବଳରୁ ରାଜଦଣ୍ଡରୁ ମୁକ୍ତି ଲାଭ କରିଥିଲା । ପରେ ସେହି ଗୋପାଳର ବନ୍ଧୁବାନ୍ଧବ ଓ ଅଧୀନସ୍ଥ ଗୋପାଳମାନେ ଅଚ୍ୟୁତାନନ୍ଦଙ୍କୁ ନିଜର ପ୍ରାଣର ଗୁରୁ ରୂପରେ ଗ୍ରହଣ କରିଥିଲେ । ସେହିଦିନଠାରୁ କ୍ରମେ କ୍ରମେ ଗୋପାଳମାନେ ମହାପୁରୁଷଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ଏମାନଙ୍କ ମଧ୍ୟରୁ ବାରଜଣ ପ୍ରଧାନ ଶିଷ୍ୟ ମହାପୁରୁଷଙ୍କ ସହ ପୁରୀଧାମକୁ ଯାଇଥିଲେ ଓ ମହାପୁରୁଷଙ୍କ ସନ୍ନ୍ୟାସ ଗ୍ରହଣ ପରେ ଚୈତନ୍ୟମଣ୍ଡଳୀରୁ କୀର୍ତ୍ତନ ଶିକ୍ଷା କରିଥିଲେ:—

ମହାପୁରୁଷଙ୍କର ବାରଜଣ ପ୍ରଧାନ ଶିଷ୍ୟ ଓ ବାରଜଣ ପ୍ରଶିଷ୍ୟ ଥିଲେ । ବାର ଶିଷ୍ୟଙ୍କର ନାମ ପୂର୍ବରେ କୁହାହୋଇଅଛି । ପ୍ରଶିଷ୍ୟମାନଙ୍କର ନାମ ।

ବନ୍ଦ’ ଶ୍ୟାମ, ହର, ଗୋକୁଳ, ନରସିଂହ, ବନୋଦ, ଶ୍ରୀଧର, ଗୋପାଳ, ଖୋପୀ, ବଂଶୀ, ମୋହନ ଓ ଶଙ୍କର ।

ଏହି ଗୋପାଳ ଶିଷ୍ୟମାନେ ଉତ୍କଳର ସବୁଁ ଗୋପାଳମାନଙ୍କ ମଧ୍ୟରେ ମହାପୁରୁଷଙ୍କ ଧର୍ମ ଓ ମହିମା ପ୍ରଚାର କରିଥିଲେ ଓ ସମସ୍ତେ ଏକଦଳବଦ୍ଧ ହୋଇଥିଲେ "ମହାପୁରୁଷ ଗୁରୁ ଭକ୍ତ ଗୀତାରେ କହିଅଛନ୍ତି" ଗଙ୍ଗାଠାରୁ ଯେ କୋଇଲା । ଆମର ଗୁରୁପଣ ହେଲା । ପ୍ରଧାନ ବାର ଶିଷ୍ୟମାନଙ୍କ ମଧ୍ୟରେ ସମସ୍ତେ ଗୋପାଳ ନ ଥିଲେ । ସେମାନଙ୍କ ମଧ୍ୟରୁ କେହି କେହି କମାର କୁମ୍ଭାର ଆଦି ଜାତିର ଲୋକ ଥିଲେ । ତାହାଙ୍କର ପ୍ରଧାନ ଶିଷ୍ୟ ରାମଚନ୍ଦ୍ର କୁଜଙ୍ଗ ରାଜାଙ୍କର ପୁତ୍ର ଥିଲେ । ସେ ଅଧିକାରୀ ଓ ମୁକୁନ୍ଦ ଅନନ୍ତାଦି ମହାନ୍ତ ପଦବୀ ପ୍ରାପ୍ତ ହୋଇଥିଲେ । ପ୍ରଧାନ ପ୍ରଧାନ ଗ୍ରନ୍ଥମାନ ରାମଚନ୍ଦ୍ରଙ୍କ ଉଦ୍ଦେଶ୍ୟରେ ଲିଖିତ ହୋଇଅଛି । ମହାପୁରୁଷ ଗୁରୁ ଭକ୍ତଗୀତା ଓ ମାଳିକାମାନଙ୍କରେ ଏହି ଶିଷ୍ୟ ପ୍ରଶିଷ୍ୟମାନଙ୍କର ଲୀଳାସ୍ଥାନ ଓ ସମାଧି ସ୍ଥାନମାନ ନିର୍ଦ୍ଦେଶ କରି ଯାଇଅଛନ୍ତି । ବିସ୍ତାର ଭୟରୁ ତହିଁରୁ ନିବୃତ୍ତ ହେଲୁଁ ।

୧୭୦୯ ବା ୧୦ ଖ୍ରୀଷ୍ଟାବ୍ଦରେ ୧୦୮ ବୟସ ସମୟରେ ମହାପୁରୁଷ ନେମାଳବଟ ମୂଳରେ ଶୂନ୍ୟ ସମାଧିସ୍ଥ ହୋଇଥିଲେ । ଶୂନ୍ୟ ସମାଧିର ଅର୍ଥ ଏହି-ସେ ରାମଚନ୍ଦ୍ରଙ୍କୁ କହିଥିଲେ—ମୁଁ ଜୀବିତାବସ୍ଥାରେ ଏକୋଇଶଦିନ ପର୍ଯ୍ୟନ୍ତ ସମାଧିସ୍ଥ ହୋଇ ରହିବି—ତୁମ୍ଭେମାନେ କେହି ମତେ ସମାଧି ସ୍ଥାନରେ ଖୋଜିବ ନାହିଁ । ପରମଭକ୍ତ ଶିଷ୍ୟ ୧୫।୧୬ ଦିନ ପରେ ଗୁରୁଙ୍କ ଅନୁପସ୍ଥିତିରେ ହୃଦୟରେ ଅସହ୍ୟ ବେଦନା ଅନୁଭବ କରିଥିଲେ । ଅନାହାରରେ ଗୁରୁ କପର ଅଛନ୍ତି—ସେଥିପାଇଁ ବ୍ୟଥିତ ହୋଇ ଜ୍ୟେଷ୍ଠପୂର୍ଣ୍ଣିମା ଦିନ ସମସ୍ତେ ଗୁରୁଙ୍କୁ ଦର୍ଶନ କରିବାକୁ ସେଠାରେ ଏକତ୍ର ହୋଇଥିଲେ—କିନ୍ତୁ ହାୟ ସେ ସ୍ଥାନ ଶୂନ୍ୟ । କେବଳ ମୃତ୍ତିକା--

ଅସ୍ଥିମାଂସର ଚିହ୍ନ ପର୍ଯ୍ୟନ୍ତ ନାହିଁ । ମହାଯୋଗୀ ଅଚ୍ୟୁତାନନ୍ଦ ଇଚ୍ଛାବିହାରୀ ଥିଲେ, ସେ ଇଚ୍ଛାମୃତ୍ୟୁ ବରଣକରି ସ୍ୱଶରୀର ସହିତ କେଉଁ ଅତୀନ୍ଦ୍ରିୟ ଅନନ୍ତଗମ୍ୟ ଧାମକୁ ଗମନ କଲେ, ତାହା ମାନବର ବୋଧାତୀତ ।

ତାହାଙ୍କର ପ୍ରିୟଶିଷ୍ୟଙ୍କର ସମାଧି ମଞ୍ଚ ଚିତ୍ରୋତ୍ପଳାର ଅପର କୂଳରେ ଅଦ୍ୟାପି ବିଦ୍ୟମାନ ରହିଅଛି ।

ଗୁରୁଭକ୍ତି ଗୀତାରେ ମହାପୁରୁଷ ନେମାଳର ମାହାତ୍ମ୍ୟ ବିଷୟରେ କହିଅଛନ୍ତି :—

ଯଦୁବନ ନେମାଳ ଆମ୍ଭର ସେହି ସ୍ଥାନ ।
ଭରତ ହାରି ଶ୍ରୀକୃଷ୍ଣ ସେଠାରେ ଗମନ ।
ସେଠାରେ ଶ୍ରୀକୃଷ୍ଣ ବସି ନୀଳାଞ୍ଚଳ ଗଲେ ।
ଅଠାଣୀ ଭୁବନେ ଯାଇଁ ଅନ୍ତର ହୋଇଲେ ॥

ମହାପୁରୁଷଙ୍କର ବଂଶଧରମାନେ ଏହି ନେମାଳ ଗ୍ରାମରେ ବାସ କରି ଆସୁଅଛନ୍ତି ଏବଂ ଗୋପାଳକୁଳ ଉପରେ ସେମାନଙ୍କର ଆଧିପତ୍ୟ ଅକ୍ଷୁର୍ଣ୍ଣ ରହିଅଛି । ବର୍ତ୍ତମାନ ମହାପୁରୁଷଙ୍କର ୧୧ଶ ବଂଶଧର ଗୋସ୍ୱାମୀ ସୁନ୍ଦରାନନ୍ଦ ନେମାଳ ଗାଦୀର ମହନ୍ତ ଅଟନ୍ତି ।

ବଂଶଧର—୨ୟ ଗଦାଧର, ୩ୟ ବାଳମୁକୁନ୍ଦ, ୪ର୍ଥ ଗନ୍ଧର୍ବ, ୫ମ ରାମଚନ୍ଦ୍ର, ୬ଷ୍ଠ ବ୍ରଜକିଶୋର, ୭ମ ବ୍ରହ୍ମାନନ୍ଦ, ୮ମ ଶ୍ୟାମାନନ୍ଦ ୯ମ ନନ୍ଦକିଶୋର, ୧୦ମ ପ୍ରେମାନନ୍ଦ, ୧୧ଶ ସୁନ୍ଦରାନନ୍ଦ ନିଜର ହୃଦୟକୁ ଭଗବାନଙ୍କ ଉପାସନାର ଉପଯୋଗୀ କରିବାକୁ ହେଲେ, ନିଜର ହୃଦୟ ମୁକୁରରେ ଶୁଦ୍ଧାଦର୍ଶନ ଓ ଜ୍ୟୋତିରୂପ ପ୍ରତିବିମ୍ବିତ କରାଇବାକୁ ହେଲେ ଏବଂ ଜ୍ୟୋତିମଧ୍ୟରେ ସେହି ନୀଳାଗିରି ସହସ୍ର ଭାବଚରମିତ ଅପୂର୍ବ କମନୀୟ ରୂପର ଦର୍ଶନ ସୁଖ ଅନୁଭବ କରିବାକୁ ହେଲେ ଓ ତଦ୍ରୂପ ଦର୍ଶନାନ୍ତର ପ୍ରୀତି

ଭକ୍ତର ଶାନ୍ତସ୍ୱାନନ୍ଦରସରେ ହୃଦୟକୁ ଆପ୍ଳୁତ କରିବାକୁ ହେଲେ, ଭଗବତ ପ୍ରାପ୍ତିରେ ପ୍ରକୃତ ଶ୍ରଦ୍ଧା ଚେଷ୍ଟା ସାଧନାରେ ଆଦୌ ଆବଶ୍ୟକ ତାହା କେହି ଅସ୍ୱୀକାର କରି ପାରିବେ ନାହିଁ । ଭିନ୍ନ ଭିନ୍ନ ପଥାବଲମ୍ବୀମାନେ ବିଭିନ୍ନ ସାଧନାମାର୍ଗ ଅବଲମ୍ବନ କରିଥାନ୍ତି । ଆମ୍ଭମାନଙ୍କର ମହାପୁରୁଷ ତଥା ପଞ୍ଚଶାଖା ମଧ୍ୟ ଅନ୍ତରଙ୍ଗ ଭକ୍ତ ଥିବାରୁ ସେମାନଙ୍କର ସ୍ମରଣ, ମଙ୍ଗଳ, ସେବା ଅର୍ଚ୍ଚନାଦି ଅନ୍ତରଙ୍ଗ ଅର୍ଥାତ୍ ଅନ୍ତର୍ମୁଖ ଥିଲା । ସେଥିଯୋଗୁଁ ସେମାନେ ଯୋଗର ଆଶ୍ରୟ ଗ୍ରହଣ କରିଥିଲେ ।

ସେମାନେ ଚୈତନ୍ୟଙ୍କର ପ୍ରେମ ଧର୍ମରେ ଯନ୍ତ୍ର ତନ୍ତ୍ର ମନ୍ତ୍ର ଓ ଯୋଗ ମିଶ୍ରିତ କରିଥିଲେ । ଏହି ଯୋଗ ବିଷୟର ବିବରଣ ଆଉ- ଥିରେ ଆଲୋଚନା କରିବାକୁ ବାସନା ରହିଲା ।

ମହାପୁରୁଷ ଗୁରୁଭକ୍ତି ଗୀତା ୧ମ ଖଣ୍ଡରେ କହିଅଛନ୍ତି :—

ଯନ୍ତ୍ରଂ ମନ୍ତ୍ରଂ ତନ୍ତ୍ରଂ ଚୈବ ଗ୍ରନ୍ଥସ୍ୟ ଜ୍ୟୋତିର ବା ତକଂ
ହଠ ସମାଧି ରସଗୁଣଂ ଚ ଯୋ ଜାନାତି ସ ବୈଷ୍ଣବଃ ।

ସେ ସଗୁଣ ନିର୍ଗୁଣ ଭାବରେ ଉପରୋକ୍ତ ଯନ୍ତ୍ର ମନ୍ତ୍ରାଦିକୁ ଗ୍ରହଣ କରିଅଛନ୍ତି ।

"ଶୁଣ ଆହେ ଗୋପସୁତ ଭଗତର କଥା ।
ସଗୁଣ ନିର୍ଗୁଣ ଦୁଇ ଯେବଣ ବ୍ୟବସ୍ଥା ।
ଦୁଇ ଯେ ଡେଣାରେ ପକ୍ଷୀ ଉଡ଼ିକରି ଯାଇ ।
ଦୁଇ ଯେ ଚକ୍ଷୁରେ ସେହି ସଂସାର ଖେଳାଇ ।
ଏକ ଯେ ନ ଥିଲେ କଣା ଦୁଇ ଗଲେ ଅନ୍ଧ ।
ଏଣୁ କରି ନିର୍ଗୁଣ ସଗୁଣ ପାଶେ ବନ୍ଧ ।
ଯନ୍ତ୍ର ତନ୍ତ୍ର ମନ୍ତ୍ର ରସ ଏହି ଚାରିଗୁଣ ।
ସଗୁଣ ଯାହାକୁ ବୋଲି ଏହି କଥା ଶୁଣ ।

ଶୂନ୍ୟ ଅବାଡ଼ ଜ୍ୟୋତି ଯେ ଏହୁଟି ସମାଧି ।
ଏ ଗୁରୁ ନିର୍ଗୁଣ ବୋଲି ପାରିଲେଟି ସାଧି ।

ମହାପୁରୁଷ ଏହି ଅଷ୍ଟଗୁଣକୁ ନିତ୍ୟ ଦିବାସର ଅଷ୍ଟଗୁଣରେ ଲଗାଇ ଅଛନ୍ତି ।

ପ୍ରଭାତୁ ସ୍ନାହାନ କରିବ । ଶୂନ୍ୟରୂପକୁ ସୁମରିବ ।
ଦ୍ୱିତୀୟ ପ୍ରହର ସ୍ନାହାନ । ଜ୍ୟୋତିରୂପକୁ କରି ଧ୍ୟାନ ।
ସନ୍ଧ୍ୟାରେ ସ୍ନାହାନ କରିଣ । ଅବାଡରୂପକୁ ଗୃହିଁଣ ।
ପ୍ରଥମ ପ୍ରହର ରଜନୀଣ । ଭଜନ କରି ମନ୍ତ୍ରଗୁଣ ।
ଦ୍ୱିତୀୟ ପ୍ରହର ରଜନୀଣ । ମନ୍ତ୍ରକୁ ଗୁଣିବ ମତନ୍ତ୍ରଣ ।
ତୃତୀୟ ପ୍ରହର ବସିବ । ସମାଧିରୂପକୁ ଧ୍ୟାଇବ ।
ତୃତୀୟ ପାହାନ୍ତ ପ୍ରହରେ । ସୁମରି ରସ ଯେ ହୃଦରେ ।
କୃଷ୍ଣର ରସ କଥାମାନ । କରିବ ମୁଖରେ ଗାୟନ ।
ଟଙ୍ଗ ଶିଙ୍ଘା ବେଣୁ ମୁରଲୀ । ଖୋଳ କର୍ତ୍ତାଳ ଆଦି ଧରି ।

ଇତ୍ୟାଦି ଇତ୍ୟାଦି ।

ମହାପୁରୁଷଙ୍କର ପ୍ରଣବବିଗ୍ରହ ଶୂନ୍ୟସଂହିତା ଆଦିରେ ଲିଖିତ ଅଛି । ଏହି ପ୍ରଣବ ସୃଷ୍ଟିପ୍ରକ୍ରିୟାର ମୂଳଭୂତ । ଷୋଳନାମ ବତିଶ ଅକ୍ଷରର ଅର୍ଥ ୫ଭୂତ, ୫ବାୟୁ, ୫ଆତ୍ମା, ୫ମନ, ୫ବୀଜ, ୫ତତ୍ତ୍ୱ ଓ ୫ମାତ୍ରା— ଏହାକୁ ସପ୍ତ ପଞ୍ଚାତ୍ମିକ କହନ୍ତି । ଏହି ସମସ୍ତର ବିଗ୍ରହ ମହାପୁରୁଷଙ୍କର ଶୂନ୍ୟ ଜ୍ୟୋତି ପ୍ରଭୃତି ଯୋଗ ବିଷୟକ ବିଗ୍ରହ କଲାବେଳେ କରିବାର ମାନସ ରହିଲା ।

ଆମ୍ଭମାନଙ୍କର ତଥାକଥିତ ଓଡ଼ିଆ ସାହିତ୍ୟର ପ୍ରସିଦ୍ଧ ଐତିହାସିକ ଶ୍ରୀ ବିଜୟଚନ୍ଦ୍ର ମଜୁମଦାର ମହାଶୟ ତାହାଙ୍କର ଉତ୍କଳ ସାହିତ୍ୟ ପରିଚୟ ୨ୟ ଖଣ୍ଡ ମୁଖବନ୍ଧରେ ଲେଖିଅଛନ୍ତି ।

ରଣପୁର ମଧ୍ୟେ ମୁଁ ଆଖଣ୍ଡଳେ ବସିକରି ଥାଇ
ପଦ୍ମନାଭ ନରେନ୍ଦ୍ର ମୋତେ ଅନ୍ନ ଦେଇ ପୋଷଇ

This couplet shows that ଅଚ୍ୟୁତାନନ୍ଦ ଦାସ put to-gethehr anyhow some words in the form of a verse and had no such literary merit.

ପ୍ରକୃତପକ୍ଷରେ ଅଚ୍ୟୁତାନନ୍ଦ ମହାପୁରୁଷଙ୍କର ଏହା ଦାଣ୍ଡି ବୃତ୍ତରେ ଲେଖା—ଏବଂ ଏହି ଅଂଶଟି ଭଣିତା ଅଟେ । ଭଣିତାରେ କପର କବିତ୍ୱ ପରିସ୍ଫୁଟ ହୁଏ ତାହା ବଙ୍ଗ କାବ୍ୟରସିକ କୌଣସି ଅଜ୍ଞାତ, ଅପ୍ରକାଶିତ କାବ୍ୟରେ ଦେଖିପାରୁଥିବେ । କିନ୍ତୁ ଆମ୍ଭେମାନେ ଯେ ସାହିତ୍ୟମାନ ପାଠ କରୁଅଛୁଁ ସେଥିରେ କୌଣସି ଗ୍ରନ୍ଥର ଭଣିତାରେ କବିତ୍ୱ ପରିସ୍ଫୁଟ ହୋଇ ନ ଥାଏ । ଯଥା :—

କହଇ ଦାସ ଜଗନ୍ନାଥ—ସପ୍ତମସ୍କନ୍ଧେ ଭାଗବତ ।

ମହାପୁରୁଷଙ୍କର ଗ୍ରନ୍ଥମାନଙ୍କ ମଧ୍ୟରେ ଯେ ଯେଉଁଠାରେ ମନ୍ତ୍ର ଯନ୍ତ୍ରାଦି ବା ଦାର୍ଶନିକ ତତ୍ତ୍ୱର ବିଚାର କରିଅଛନ୍ତି ସେ ସବୁ ସ୍ଥାନରେ ତାହାଙ୍କଠାରୁ କବିତ୍ୱ ଆଶା କରିବା ମଧ୍ୟ ବିଡ଼ମ୍ବନା । କିନ୍ତୁ ମହାପୁରୁଷ ଯେଉଁ ଯେଉଁ ସ୍ଥାନ ଓ ଗ୍ରନ୍ଥମାନଙ୍କରେ କବିତ୍ୱ ପ୍ରକାଶ କରିବାର ସୁଯୋଗ ପାଇଅଛନ୍ତି ସେହି ସେହି ସ୍ଥାନମାନଙ୍କରେ ତାହାଙ୍କର ନିର୍ମଳ କବିତ୍ୱ ପରିସ୍ଫୁଟ ହୋଇଅଛି । ଯଥା :—

ଟହ୍ରୀରୂପ ଗୁଣମାନ ବହୁଜନ୍ତି ମୁନି ।
ବକଳେ ପୁଣି ବେଦନ୍ତି କର ଉଚ୍ଚ ଧ୍ୱନି ।
ନରଢେ ବେନ ଲୋଚନୁଁ ଲୋତକ ଗଳଇ ।
ଶୁଭ୍ର ସ୍ଫଟିକ ଜାଣି ସେ ଷଢରେ ଟେଉଇ ।
ନୟନକୋଣରୁ ଲୁହ ବହେ ଅତି ବେଗେ ।
ଦଧିର ବର୍ଣ୍ଣ ଦିଶଇ ଦେହ ମୁନି ଅଙ୍ଗେ ।

ସବୁ ଲୁହଯାକ ଗଡ଼ି ଏକାଠାବେ ପଡ଼ି ।
ଚକାବାନ୍ଧିଲା ବୁନ୍ଦାଏ ନ ଗଳାକ ଗଡ଼ି ।
ମାଜିଲା ଦର୍ପଣ ପ୍ରାୟ ଦିଶଇ ତା ଜ୍ୟୋତି ।
ଅତ୍ୟନ୍ତ ସୁନ୍ଦର ଦିବ୍ୟ ସୁସଞ୍ଚ ମୂରତି ।

ଇତ୍ୟାଦି ଇତ୍ୟାଦି ହରିବଂଶ ।

ଏତେ ପ୍ରଭୁ ଆତ୍ରେ କରଣ ମନୁ ନ ଗଲା ମାନ ।
ଶ୍ରୀ ବିମ୍ବଅଧରେ ବୋଲି ଯେ ଭୃତ୍ୟ ମୋର ଜୀବନ ।
ଭୃତ୍ୟ ବତ୍ସଳ ତୁମ୍ଭ ବାନା ସର୍ବଜନେ ବୋଲୁଅ ।
ଭୃତ୍ୟକୁ ବିପତ୍ତି ପଡ଼ିଲେ କିବା ସଙ୍ଗତେ ଥାଅ ।
ଭୃତ୍ୟ ହୋଇଲେ ଅପରାଧୀ ନାନାପ୍ରକାରେ ଦୋଷ ।
ପ୍ରଭୁ ହୋଇ କ୍ଷମା ନ କଲେ ଭୃତ୍ୟ କରିବ କିସ ।
ଭୃତ୍ୟ ଅପରାଧୀ ହୋଇଲେ କ୍ଷମା କର ସାଆନ୍ତ ।
ସ୍ତ୍ରୀଣ ଅପରାଧୀ ହୋଇଲେ କ୍ଷମା କରଇ କାନ୍ତ ।

ଇତ୍ୟାଦି ଇତ୍ୟାଦି ନବଗୁଞ୍ଜରୀ ।

ଘିନ ବିନୋଦିଆ ଠାକୁର ଭକ୍ତ ବତ୍ସଳ ହରି ।
ଭକ୍ତ ଙ୍କପାଇଁ କଳେବର ଦଶ ମୂରତି ଧରି ।
ଭକ୍ତ ଅବା କଣ କରିବେ ଭକ୍ତ ବୋଲିରେ ଥାଅ ।
ଭକ୍ତ ପେଶିଲେ ହସ୍ତିନାଦୂତ ପଣରେ ଯାଅ ।
ଭକ୍ତ ଦେଖାଇଲା ସ୍ତମ୍ଭକୁ, ସ୍ତମ୍ଭୁ ହେଲା ଉତ୍ପତ୍ତି ।
ମୁଁ ତୁମ୍ଭ ଭୃତ୍ୟେ ତେର ଭୃତ୍ୟ ପଣେ ଦୀନ ଅଚ୍ୟୁତ ।

ଅଷ୍ଟ ଗୁଞ୍ଜରୀ

ଆମ୍ଭେ ଜଳଧର ତୁମ୍ଭେ ସୌଦାମିନୀ
ତୁମ୍ଭେ ଶୂନ୍ୟ ମୁଁ ପବନ ହେ ।
ଆମ୍ଭେ ଅପରାଧ ତୁମ୍ଭେ କୃପାନିଧି
ତୁମ୍ଭେ ସିନ୍ଧୁ ମୁଁ ଜୀବନ ହେ ।

ନିତ୍ୟ ବନେ ଶତ୍ରୁ ଅନ୍ଧକାର
କୃଷ୍ଣ ରାଧା ନୋହେ ଭିନ୍ନ ହେ ।
ପାମର ଅଚ୍ୟୁତ କହେ ବେଣୁଧର
ନ ଦେଖି ହୃଦୟ ଛିନ୍ନ ହେ ।

୪୬ ଚୌପଦୀ ।

ମହା ପୁରୁଷଙ୍କର ଭଜନମାନଙ୍କରେ କବିତ୍ୱ ପରାକାଷ୍ଠାରେ ପରିସ୍ଫୁଟ ହୋଇଅଛି । ଆମ୍ଭେ ଏଠାରେ ତାହାଁର ଗୋଟିଏ ଦୁଇଟି ମାତ୍ର ଉଦାହରଣ ଦେଇ ନିବୃତ୍ତ ହେଲୁଁ ।

ଆମ୍ଭେମାନେ ଅନେକ ସ୍ଥାନରେ ଅନେକ ତୀର୍ଥ କ୍ଷେତ୍ରରେ ବନ୍ଧୁ ମହା ପୁରୁଷଙ୍କର ଅଧିଷ୍ଠାନ ଦର୍ଶନ କରିଅଛୁଁ । ସେହି ଅଧିଷ୍ଠାନମାନ ଆଜି ଐଶ୍ୱର୍ଯ୍ୟର ଲୀଳା ସ୍ଥାନରେ ପରିଣତ ହୋଇଅଛି । ମହାପୁରୁଷ ଗୃହରେ ସନ୍ନ୍ୟାସୀବତ୍ ଜୀବନଯାପନ କରିଥିଲେ । ଐଶ୍ୱର୍ଯ୍ୟକୁ ପରିହାର କରିଥିଲେ । ସେ ଇଚ୍ଛା କରିଥିଲେ ପ୍ରକାଣ୍ଡ ମନ୍ଦିରମାନ ଓ ବହୁଧନ ବୃତ୍ତି ନିଜ ପରିବାର ପରିପୋଷଣ ନିମିତ୍ତ ବିଧାନ କରିପାରିଥାନ୍ତେ । ମହାପୁରୁଷଙ୍କର ସେ ଶକ୍ତି ଥିଲା, କିନ୍ତୁ ସେ ଶକ୍ତି ବିରଦନ ଲାଗି ନିଜର ଉତ୍ତରାଧିକାରିଙ୍କ ନିମିତ୍ତ ସେହି ନିଃସ୍ୱ ପରମଧାର୍ମିକ ବୈଷ୍ଣବଜୀବନ ପରିରକ୍ଷଣାର୍ଥ ନିୟୋଜିତ ହୋଇଥିଲା । ଗୋପାଳଗୁରୁ ମହାପୁରୁଷ ନିଜର ବଂଶଧରଙ୍କୁ ପ୍ରକୃତ ଗୋପାଳଗୁରୁ ରୂପରେ ରକ୍ଷା କରିବାକୁ ବିଧାନ କରିଥିଲେ । ନିଜ ଧର୍ମପ୍ରାଣତାରେ ଶିଷ୍ୟମାନଙ୍କ ନିକଟରେ ସ୍ୱଗୁରୁତ୍ୱର ପରିଚୟ ଦେଲେ ନିଜର ଜୀବିକା ନିର୍ବାହ କରିବେ, ଅନ୍ୟଥା ଧର୍ମର ଲୋପ ସଙ୍ଗେ ସଙ୍ଗେ ବଂଶର ଲୋପ ଅବଶ୍ୟମ୍ଭାବୀ । ସେ ନିଜର ବଂଶଧରମାନଙ୍କୁ ଏହି କଠୋର ଶାସନର ଅନୁବର୍ତ୍ତୀ କରାଇଥିଲେ । ଏହି ମହାଯୋଗୀ ପରମ ଭାଗବତ ମହାପୁରୁଷ ଧର୍ମ ଜଗତରେ ଏକ ଅତୁଳନୀୟ ଆଦର୍ଶ, ତାହାର ଜୀବନ ଜଗତ ସମକ୍ଷରେ

ଦର୍ଶାଇଅଛନ୍ତି । ଉତ୍କଳ ! ଉଦ୍‌ବୁଦ୍ଧ ହୁଅ, ନିଜ ପୂର୍ବପୁରୁଷଙ୍କ ମହତ୍ତ୍ୱର ସୀମା ଆକଳନା କର, ଆଶ୍ଚର୍ଯ୍ୟ ହେବ, ଆତ୍ମହରା ହେବ, ହୃଦୟସ୍ଥ ଆନନ୍ଦ ରସରେ ଆପ୍ଳୁତ ହେବ, ନିଜକୁ ଧନ୍ୟ ମଣିବ ଏବଂ କହିବ ଯେ ମୁଁ ସାଧୁର ସନ୍ତାନ, ଯୋଗିର ସନ୍ତାନ, ତ୍ୟାଗିର ସନ୍ତାନ କର୍ମବୀରର ସନ୍ତାନ ଓ ଧର୍ମବୀରର ସନ୍ତାନ । ଏହି ଭାବ ବୃଥା ଆତ୍ମସମ୍ମାନରେ ପର୍ଯ୍ୟବସିତ ନ ହେଉ, ଉପଯୁକ୍ତ ପିତାର ଉପଯୁକ୍ତ ପୁତ୍ର ହେବାକୁ ବ୍ୟାକୁଳ ହୁଅ । ସେହି ମହାପୁରୁଷମାନଙ୍କର ପନ୍ଥା ଅନୁସରଣ କର । ଦେଖିବ ତୁମ୍ଭେ ଅଜ୍ଞାତସାରରେ ଉନ୍ନତ ପଦବୀକୁ ଉନ୍ନୀତ ହୋଇଅଛ, ନିଜର ଗୌରବରେ ଗୌରବାନ୍ୱିତ ହୋଇଅଛ ଏବଂ ଧର୍ମ ଓ ନୀତି ଜଗତର ଦାସତ୍ୱ ଶୃଙ୍ଖଳରୁ ମୁକ୍ତ ଲଭିଅଛ । ଅଧୁନା ସେହି ଯୁଗର ଚୈତନ୍ୟଚନ୍ଦ୍ର, ରାମାନନ୍ଦ ରାୟ, ଶିଖି ମହାନ୍ତି, ମାଧବୀ ଦାସୀ, ସ୍ୱରୂପ ଦାମୋଦର ବଳରାମ, ଜଗନ୍ନାଥ, ଅନନ୍ତ, ଯଶୋବନ୍ତ ଓ ଅଚ୍ୟୁତାନନ୍ଦଙ୍କର ପରମପବିତ୍ର ନାମ ଉଚ୍ଚାରଣ କର ଏବଂ ସେମାନଙ୍କ ପଦଦେଶରେ ମସ୍ତକ ଅବନତ କର ଏହି ନିଷ୍କର୍ମା ଅଧମ ନିଜର ବାଚାଳତାରୁ କ୍ଷାନ୍ତ ଲଭିଲା ।



# ଭ୍ରମ ସଂଶୋଧନ ।

## ମୁଖବନ୍ଧ ।

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୧। | ୧୩ | ୧୫୩୨ ବା ୧୫୩୩ | ୧୫୪୦ |
| ୨୶ | ୨ | ବିଦ୍ୟମାନ | ବିଦ୍ୟାମାନ |
| ୨।/ | ୨୨ | ପଞ୍ଚଶଖାଙ୍କ ପରେ | ପଞ୍ଚସଖାଙ୍କ ଠାରେ |
| ୨।୶ | ୪ | ନବକୃଷ୍ଣ | ନିତ୍ୟକୃଷ୍ଣ |
| ,, | ,, | ନରଞ୍ଜନ | ନିରଞ୍ଜନ |
| ୨।୷ | ୭ | ଅଗ୍ୟାନ | ଆଖ୍ୟାପନ |
| ,, | ୯ | ଉଦ୍ଦେର୍ଧ୍ୟା | ଉଦ୍ଦେଧ୍ୟ |
| ,, | ୧୫ | ମିଶ୍ରା | ମଶ୍ରା |
| ୨୳୶ | ୫ | ପ୍ରାତି | ପ୍ରୀତି |
| ୩।୷ | ୮ | ଗୋବଦାସ୍ତୁ | ଗୋବର୍ଦ୍ଧାସ୍ତୁ |
| ୩୳/ | ୧୧ | ଐସୁର୍ଯ୍ୟ | ଐଶ୍ୱର୍ଯ୍ୟ |
| ୩୳୶ | ୨୦ | କଥିଲେ | କରଥିଲେ |
| ୩୳୷ | ୫ | ବନ୍ଧ | ବନ୍ଧି |
| ,, | ୨୧ | ପରକ୍ଷ | ପରମ |
| ୩୳ | ୧୯ | ସୁନ୍ଦରନନ୍ଦନନଗର | ସୁନ୍ଦରନନ୍ଦ । ନଗର |
| ,, | ୨୩ | ଖାବ | ଖାଗ |
| ୩୳/ | ୧ | ଶନ୍ଦ୍ରସ୍ତା | ଚନ୍ଦ୍ରସ୍ତା |
| ୩୳/ | ୨ | ସାଧନାରେ | ସାଧନା ଯେ |

## ବ୍ରହ୍ମଶାଙ୍କୁଳି ।

| | | | |
|---|---|---|---|
| ୨ | ୧ | ପକ୍ଷ | ପକ୍ଷି |
| ୩ | ୧ | ଗ୍ରମ | ଗ୍ରଥା |
| ୪ | ୧୪ | ଶାବ୍ଦିକ ଚେଷ୍ଟାରେ | ଶବ୍ଦକୁ ଚଷ୍ଟାରେ |
| ,, | ୧୬ | ମନ ସୁଚେତା | ସୁମନ ଚେତା |
| ୬ | ୧୫ | ନାକାସି | ନାସିକା |
| ୮ | ୬ | ଠରପନ୍ତ | ଠରାପନ୍ତ |
| ୮ | ୭ | ସ୍ତୁର୍ଯ୍ୟ | ସୂର୍ଯ୍ୟ |
| ୧୦ | ୫ | ଜୀବ | ଯୀବ |

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୧୦ | ୨୨ | ପକ୍ଷୀ | ପକ୍ଷ, ( ଡେଣାକୁ ଧର ପକ୍ଷ କାଠ ) |
| ୧୩ | ୪।୯ | ଛାଇ | ବାଇ |
| ୧୪ | ୧୧।୧୨ | ନଗ୍ରୁଥ | ନଷ୍ଟଥି |
| ,, | ୨୨ | ଅସାଧନେ | ଯେ ସାଧନେ |
| ୧୬ | ୭ | ଥାଇ | ଖାଇ |
| ୧୭ | ୪ | ବ୍ରହ୍ମାକୁ | ବ୍ରହ୍ମକୁ |
| ୧୮ | ୫ | ଶିଖୁ | ଶିଖେ |
| ୧୯ | ୧୦ | ପଙ୍କାଶ | ପଞ୍ଚାଶ |
| ,, | ୨୦ | ମୁକରେ | ମୂଳରେ |
| ,, | ୨୧ | ଇନ୍ଦ୍ରଚନ୍ଦ୍ର | ଇନ୍ଦ୍ରଚନ୍ଦ୍ର । |
| ୨୪ | ୧୨ | ଛଳାକାର | ଜଳାକାର |
| ,, | ୧୬ | ଅର୍ଦ୍ଧ | ଅଧ |
| ୨୫ | ୨୭ | ଯାଢ | କାଢ |
| ୨୯ | ୧୫ | ଦକ୍ଷା | ଦୀକ୍ଷା |
| ୩୨ | ୨ | ମହ୍ୱଜ | ସହ୍ୱଜ |

## ଅଣାକାର ସଂହିତା ।

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୩,୩ | ୭ | ବଷଯୁ | ଭଜଯୁ |
| ୩୬ | ୧୬ | ବଦ୍ୟାନନ୍ଦ | ଦବ୍ୟାନନ୍ଦ |
| ୩୭ | ୨୪ | ଅକଲ୍ପ | ଅଳ୍ପକ |
| ୩୮ | ୨ | ବୃଗ୍ରକ୍ତ | ବୃଗ୍ରାନ୍ତ |
| ,, | ୩ | ଆସ୍ମ | ଅ.ଶ |
| ,, | ୫ | ବ୍ରହ୍ମଭବ | ବ୍ରହ୍ମଭର୍ଗ |
| ,, | ୨୨ | ଗୁଣ | ସ୍ବର୍ଗ |
| ୪୨ | ୨୩ | ଭେସ୍ୱ | ଭେଷ |
| ୪୩ | ୨ | ସେଠ | ଶ୍ୱେତ |
| ,, | ୨୭ | ଧନ | ଧ୍ୱନ |
| ୪୪ | ୧୦ | ଭିରରେ | ଭିତରେ |
| ,, | ୨୦ | ଦ୍ରୋଣ | ଦ୍ରୋଇଣ |
| ,, | ୨୩ | ଶ୍ରୀକୃଷ୍ଣ | ଶ୍ରୀକୃଷ୍ଣ |
| | ୨୪ | ବସାଂନ | ବଂଶାନ |

ଶ୍ରୀ ଚନ୍ଦ୍ର କାନ୍ତି

# ବ୍ରହ୍ମଶାଙ୍କୁଳି ଲେଖନ ।

---

## ଶ୍ରୀ ଗୁରବେ ନମଃ ।

### ପ୍ରଥମ କଳ୍ପ ।

| | |
|---|---|
| ନମଃସ୍ତୁ ଅଣାକାର ସ୍ୱାମୀ | । ପରମଗୁରୁ ଅନ୍ତର୍ଯ୍ୟାମୀ ॥ |
| ପ୍ରକୃତପରେ ତୁମ୍ଭ ବାସ | । ଛପନାକୋଟି ଘଟେ ଦୃଶ୍ୟ ॥ |
| କାମଆଶ୍ରିତେ ମୂଢ଼ ନର | । ପୂଜନ୍ତି ଭୂତ ପ୍ରେତ ସୁର ॥ |
| ଭାବନା ନାହିଁ ନିଜବୃତ୍ତି | । ଭବସାଗରେ ଧନ୍ଦ ହୋନ୍ତି ॥ |
| ତୁ ସ୍ୱାମୀ ସର୍ବଭୂତେ ପୂରି | । ଅନନ୍ତ ଅବ୍ୟକ୍ତବିହାରୀ ॥ |
| ପାଦୁଁ ଗଳୁଛି ମକରନ୍ଦ | । ପରମ ଶୁଦ୍ଧ ବ୍ରହ୍ମପାଦ ॥ |
| ସେ ପାଦେ ମୋତେ ରଖ ନେଇ | । ଶରଣ ଗଲି କରି ଯାହି ॥ |
| ନିର୍ଗୁଣ ଶୂନ୍ୟମନ୍ତ୍ର ଜ୍ଞାନ | । ପୁଚ୍ଛିଲେ ବ୍ରହ୍ମାଙ୍କ ନନ୍ଦନ ॥ |
| ଭୂଷଣ୍ଡ କହିଲେ ପ୍ରକାଶି | । ନିଷ୍କାମ ନିର୍ବେଦ ଅଭ୍ୟାସି ॥ |
| ବ୍ରହ୍ମ ପରତେ ବ୍ରହ୍ମପଦ | । ମୋତେ ଯା କହିଲେ ଗୋବିନ୍ଦ ॥ |
| ଶୁଣ ହୋ ରାମଚନ୍ଦ୍ର ଶିଷ୍ୟ | । ସତ୍ୟ ଅନ୍ତେ ଯେତା ପ୍ରକାଶ ॥ |
| ସେ ଯୁଗ ସମୟ ଉକତେ | । ବଶିଷ୍ଠ ପିତାମହ ସୁତେ ॥ |
| ଦିଗଭ୍ରମଣ କରି ଆସେ | । ଭ୍ରମନ୍ତି ବ୍ରହ୍ମଗୃହୀ ବେଶେ ॥ |
| ମହୋଦଧି ଦକ୍ଷିଣ ତୀରେ | । ମିଳିଲେ ଶ୍ରୀନୀଳକନ୍ଦରେ ॥ |
| ଭେଟିଲେ ପ୍ରଚଣ୍ଡର ସୁତ | । ହୋଇଛି ସିଦ୍ଧାଙ୍ଗ ଲକ୍ଷିତ ॥ |
| ଦିଶୁଛି ଶୁକ୍ଳାମ୍ବର କନ୍ଥେ | । ସ୍ୱର୍ଣ୍ଣ ସ୍ୱକାନ୍ତି ପ୍ରଭା ଦେହେ ॥ |
| ବସିଛି କଳ୍ପବୃକ୍ଷ ଡାଳେ | । ମହାତ୍ମାଶକ୍ତି ମହୀତଳେ ॥ |
| ବ୍ରହ୍ମାନନ୍ଦନ ତାହା ଦେଖି | । ଅଶ୍ରୁ ପୂରିତ ବେନିଆଖି ॥ |
| ତତ୍ତ୍ୱ ଜାଣିବା ଏ କେମନ୍ତ | । କି ନାମ କାହାର ଏ ସୁତ ॥ |
| ଏହାଙ୍କଠାରୁ ଶିକ୍ଷା ନେଇ | । ଏତ ନିଷ୍କାମ ସିଦ୍ଧଦେହୀ ॥ |

ଏମନ୍ତ ବିଚାର ବଶିଷ୍ଠ । ବୋଲନ୍ତି ଆହେ ପକ୍ଷଶ୍ରେଷ୍ଠ ॥
ତୁ ମହାତମା ଦ୍ୱିଜଅଙ୍ଗୀ । ତୋଷୁବେ ମୋତେ କର ସଙ୍ଗୀ ॥
ମୁଁ ଅଟେ ବ୍ରହ୍ମାର ନନ୍ଦନ । ବଶିଷ୍ଠ ବୋଲି ମୋର ନାମ ॥
ଏ ମହୀ ଭ୍ରମି ଶ୍ରମେ ଫୁଟି । ବ୍ରତ ସହିତ ତୀର୍ଥ ଖଟି ॥
ଅନେକ ତପ ଆଚରିଲି । ମୁଁ ଆତ୍ମାସଙ୍ଗ ନ ପାଇଲି ॥
ମନ ମୋ କ୍ଷଣେ ନୁହେ ସ୍ଥିର । ଏଥକୁ ତୋ ମନେ ବିଚାର ॥
ଶୁଣିଣ ବଶିଷ୍ଠ ବିନୟେ । ଭୂଷଣ୍ଡ ଉର୍ଦ୍ଧ୍ୱ ମୁଖେ ଚାହେଁ ॥
ନେତ୍ରୁଁ ଲୋତକ ଯାଏ ବହି । ବୋଲନ୍ତି ବଶିଷ୍ଠକୁ ଚାହିଁ ॥
ଭୂଷଣ୍ଡ ବୋଲନ୍ତି ଭୋ ଋଷି । ପାରବୁଟିକି ଜ୍ଞାନେ ପଶି ॥
ସେ ବ୍ରହ୍ମଜ୍ଞାନର ବ୍ୟବସ୍ଥା । ମନ ଭିତରେ ସବୁକଥା ॥
ଗୁପତ ଭାବେ ଅଛି ରହି । ସେ କଥା ନ ଜାଣନ୍ତି କେହି ॥
ତୁ ଯେବେ ପୁଚ୍ଛାକଲୁ ମୋତେ । ଥୋକାଏ କହିଦେବା ତୋତେ ॥
ଯେତେ ଏ ତୀର୍ଥ ବ୍ରତ ତପ । କ୍ରିୟା ସମ୍ଭବ ମନ୍ତ୍ର ଜପ ॥
ଏ ସବୁ ଧର୍ମ ନୁହେ କିଛି । ସଂସାରହିତେ ବେଦ ଗଛି ॥
ଯିବା ଆସିବା ସ୍ୱର୍ଗ ନର୍କ । ଯାତନା ହୁଏ କାହା ଶୋକ ॥
ସ୍ୱକାମ କର୍ମେ ଧନ୍ଦ ହୋଇ । ଆତ୍ମାକୁ ନରତେ ପୀଡ଼ଇ ॥
ସେ ଆତ୍ମାଗତ ନ ବିଚାର । ବିଅର୍ଥେ ଯାଉଅଛି ସର ॥
ସକଳ କର୍ମ କର ନାଶ । ଅକର୍ମ ପଥେ କଲେ ଆଶ ॥
ତେବେ ନିଶ୍ଚଳ ହୁଏ ମନ । ଶୁଣ ହେ ବ୍ରହ୍ମାର ନନ୍ଦନ ॥
ଭୂଷଣ୍ଡେ ଚାହିଁ କହେ ମୁନି । ଭୋ ପକ୍ଷି ଜୀବ ତୋର ଧନ ॥
କଥାଏ ପଚାରଇ ତୋତେ । ସଂଶୟ ଫେଡ କହ ମୋତେ ॥
କେଉଁ ସାଧନା ତୁମ୍ଭେ କର । କେମନ୍ତେ ହୋଇଲ ଅମର ॥
କାହାକୁ ଅଛ ମନେ ଧ୍ୟାୟି । କହ ପ୍ରସନ୍ନ ଚିତ୍ତେ ବହି ॥
ଶୁଣି ଭୂଷଣ୍ଡ କହେ ଋଷି । ତୁ ଯାହା ପୁଚ୍ଛାକଲୁ ଆସି ॥
ଶୁଣ ମୁଁ ତୋତେ କହିବଇଁ । ମୁଁ ଅଛି ଅଣାକ୍ଷର ଧ୍ୟାଇ ॥
କଳପବୃକ୍ଷେ ଆମ୍ଭେ ଥାଉଁ । ଭଜନ କରୁ ଗଉ ଗଉ ॥
ଗଉ ଭଜନେ ଚଉତୋଷ । ନ ଯାଉଁ ମ ଅକ୍ଷର ପାଶ ॥

ମ ରାମ ଶବଦେ ମିଳାଇ । ମରିବା ଠାରେ ହେତୁ ଧାଇଁ ॥
ମଅଁ ପ୍ରସନେ ତୋଷମତି । ରାଉ ପ୍ରାପତେ ଶୁଦ୍ଧଗତି ॥
ରାଉ ଭଜନ କରି କଣ୍ଠେ । ମଅଁକୁ ନ ଲଗାଉ ଅଣ୍ଟେ ॥
ରାଉଟି ଅଣାକ୍ଷର ତତ୍ତ୍ୱ । ଓଁକାର ବ୍ରହ୍ମ ସାରସ୍ୱତ ॥
ଓଁକାର ଯେନ ହିନା ଦେହ । ଶୁଣ ହୋ ପ୍ରଜାପତିପୁଅ ॥
ବ୍ରହ୍ମାଦି କୀଟ ପଶୁପତି । କନୁଜନମ ତିନ ମୂର୍ତ୍ତି ॥
ସମସ୍ତେ ଓଁକାର ଆଶ୍ରିତ । ଧଃ ଛନ୍ତି ସକଳ ଜୀବତ ॥
ଧରିଲ ପାଦ ଯେବେ ଧାଇ । ତେବେ ସେ ଅକାମର ଦେହୀ ॥
ମୁଁ ଅଣାକାର ଭକ୍ତ ସାଧି । ମୋତେ ପ୍ରସନ୍ନ ସେ ଅନାଦି ॥
ମନ ଚୈତନ୍ୟ ଦୃଢ଼କରି । ଅପାନ ପବନକୁ ଧରି ॥
ସମାନ ପ୍ରାଣ ଆଦିମୂଳ । ବ୍ୟାନ ପବନେ କରିତୂଳ ॥
ଉଦାନ ବାୟୁ ଧରି ପୁଣି । ନିରୋଧ କରଇ ତ୍ରିବେଣୀ ॥
ବଙ୍କନାଳର ଶିଖରେ । କମା ଉଶାଳ ଯେଉଁଠାରେ ॥
ଊର୍ଦ୍ଧ୍ୱ ମୁଖରେ କରି ଠଣା । ମହାଶୂନ୍ୟରେ ମୋ ଭଜନା ॥
ସେ ମହାଶୂନ୍ୟର ବାହାର । ସୁର ସିଦ୍ଧଙ୍କୁ ଅଗୋଚର ॥
ତୋ ହୃଦମଧ୍ୟେ ଅଛି ଜ୍ଞାନ । ତୁ ତେତେ ଖୋଜ କର ସ୍ନାନ ॥
ସେ ବ୍ରହ୍ମ ତୋ ଦେହରେ ବନ୍ଦ । ମନ ପବନ ଦୃଢ଼େ ଛନ୍ଦ ॥
ଯେବେ ପାଇବୁ ଦିବ୍ୟ ସୁଖ । ଅଦୃଷ୍ଟି ଭୂମିକି ତୁ ଦେଖ ॥
ଅତୋଳ ତୋଳ ରଖ ତୁହି । ଅମିୟ ସୁଧାପାନ ପିଇ ॥
ଅମାପ ମାପିବାକ ଯେବେ । ଅଭକ୍ଷ ଦ୍ରବ୍ୟ ଭକ୍ଷି ତେବେ ॥
ଗୁପତେ ଅଛି ଜ୍ଞାନଖଣ୍ଡ । ବଶିଷ୍ଠେ କହିଲେ ଭୁଷଣ୍ଡ ॥
ଶୁଣ ହୋ ରାମଚନ୍ଦ୍ର ଏହା । ତୋତେ ମନୋହର ଚଉଦ ଦହ୍ନା ॥
କହଇ ପାମର ଅଚ୍ୟୁତ । ଅଭେଦ୍ୟ ବ୍ରହ୍ମେ ଥୋଇ ମତି ॥
ସୁଜନେ ବ୍ରହ୍ମ ଉପଦେଶ । ପାଇ କଳୁଷ କର ନାଶ ॥

ଇତି ଶ୍ରୀ ବ୍ରହ୍ମଶାଙ୍କୁଳିବର୍ଣ୍ଣନେ ଚନ୍ଦ୍ରକାନ୍ତ ହେତୁ
ଭୁଷଣ୍ଡବଶିଷ୍ଠସମ୍ବାଦେ ଶ୍ରୀ ଗୁରୁଶିଷ୍ୟ ଉପଦେଶେ
ପ୍ରଥମ କଲ୍ପଉକ୍ତଃ ।

# ଦ୍ୱିତୀୟ କଳଃ ।

## ଶ୍ରୀ ବଶିଷ୍ଠ ଉବାଚ ।

ବୋଲନ୍ତି ବ୍ରହ୍ମାଙ୍କ ନନ୍ଦନ । ହେ କାକ ଶୁଣ ମୋ ବଚନ ॥
ଏ ଘଟ ଯୋଗ ଛନ୍ଦ କି କି । ଏହା ପୁଛଇ କହ ନକି ॥
ଯନ୍ତ୍ର ବନ୍ୟାସି ତନ୍ତ୍ର କହ । ଯେମନ୍ତେ ରହିବ ଏ ଦେହ ॥
ସପ୍ତାଙ୍ଗଯୋଗରେ ମୁଁ ବଣା । ଏଥୁ ଅଧିକ ଥିଲେ ଜଣା ॥
ଆତ୍ମା କି ରୂପେ ହେବ ସ୍ଥିର । ପୁଛଇ କହ ସେ ବିଗ୍ଭର ॥
ଶୁଣି ବଶିଷ୍ଠ ବାଣୀ ହସି । କହଇ ପ୍ରଚଣ୍ଡର ଶିଷି ॥

## ଶ୍ରୀ ଭୂଷଣ୍ଡ ଉବାଚ ।

ଶୁଣ ହେ ବ୍ରହ୍ମାର ନନ୍ଦନ । ତୁ ଯାହା ପୁଛିଲୁ ପ୍ରଶନ ॥
ଉତ୍ତମ ଶିଷ୍ୟେ ଏହା କହ । ସୁମାର୍ଗ ଗତ ଏ ବୋଲଇ ॥
ତୁ ଯେ ସପ୍ତାଙ୍ଗେ ହୋଇ ବଣା । କାର ତଥିରେ ହେଉ ଜଣା ॥
ସାଧିଲେ ବହୁଦିନେ ସିଦ୍ଧି । ଏ ମହା କଷ୍ଟ କ୍ଷୀଣ ବିଧି ॥
ଶାମ୍ଭବିକ ଚେତାରେ ସମ୍ଭାଇ । ଲକ୍ଷ୍ମୀଙ୍କେ ହେତୁ ରଖ ନେଇ ॥
ଲାଗିଛୁ ଦାବାନଳ ଏକା । ଅମନ ସୂନେ ହେତୁ ରଖା ॥
ଅବର୍ଣ୍ଣ ଅଚହ୍ନା ସେ ପାଦ । ମନ ସୁଚେତା ଦ୍ୱାରେ ଛନ୍ଦ ॥
ଉଜାଣି ପବନକୁ ନେଇ । ତ୍ରିକୂଟ ମଧ୍ୟେ ଭର ରୁହ ॥
ତୁହାଇ ଉଠିଲେ ସେ ବାତ । ଦଶିବ ରାଜଦାଣ୍ଡ ପଥ ॥
ପରମ ସଙ୍ଗେ ହେଲେ ଗୋଷ୍ଠୀ । ଯିବ ତ୍ରିଗୁଣ ସୂକ୍ଷ୍ମ କଟି ॥
ତ୍ରିଗୁଣ ସୂକ୍ଷ୍ମ ହେଲେ ଯସ୍ତ୍ର । ଅଜସ୍ରଗଢ଼ ହେବ ଜସ୍ତ୍ର ॥
ଭେଟିବ ଅବର୍ଣ୍ଣ ଅଲେଖ । କଟିବ ଭବଭୟ ଦୁଃଖ ॥
ଏମନ୍ତ ଭୂଷଣ୍ଡ କହନ୍ତେ । ପ୍ରେମେ ଉଲ୍ଲାସ ତପୋବନ୍ତେ ॥

## ଶ୍ରୀ ବଶିଷ୍ଠ ଉବାଚ ।

ହେ ମହାତ୍ମା କାକଶ୍ରେଷ୍ଠ । ଏ ତୋର ବଚନ ଗରିଷ୍ଠ ॥
ଶୁଣି ମୋ ମନ ଆନନ୍ଦିତ । ଫେଡ଼ି ତୁ କହ ଗୁପ୍ତ ତତ୍ତ୍ୱ ॥
ଆମ୍ଭେ ତୁମ୍ଭର ହେଲୁ ଶିଷ୍ୟ । କହ ତୋ ସାଧ୍ୟ ଉପଦେଶ ॥

ମୋହର ଭାଗ୍ୟଥିଲା କେତେ । ଭେଟିଲି ଶୁଭ ଯୋଗେ ତୋତେ ॥
ଶ୍ରୀରାମ ଗ୍ରୁମୁଖେ ତୋ କଥା । କହିବି ସକଳ ବାରତା ॥
ଶୁଣିଲେ ରଘୁବଂଶୀ ତୋତେ । ପ୍ରଶଂସା କରବେ ଯୁକତେ ॥
ଏମନ୍ତ ମୁନି ମୁଖୁଁ ଶୁଣି । କହେ ଭୁଷଣ୍ଡି ମହାଜ୍ଞାନୀ ॥
ଶୁଣ ହୋ ଚତୁର୍ମୁଖ ବାଳ । ଅଭୟ ବ୍ରହ୍ମ ନିତ୍ୟ ଖେଳ ॥
ତ୍ରିଦଶେ କେହି ନ ଜାଣନ୍ତି । ବିଷ୍ଣୁ ମାୟାରେ ଭ୍ରମୁଛନ୍ତି ॥
ତୋ ପିତାମହ ଆଦି ଯେତେ । ମାୟାରେ ଭ୍ରମନ୍ତି ସମସ୍ତେ ॥
ମନକୁ ଏକାକରି ସାଧ । ଧାଇ ଅଛନ୍ତି ସଦାନନ୍ଦ ॥
ତେଣୁ ଅଷ୍ଟାଙ୍ଗ ଯୋଗେ କାଶୀ । ଅଛନ୍ତି ତ୍ରିକୂଟରେ ବସି ॥
ସେ ଅଣାକାର ଭକ୍ତ ହର । ଶୁଣ ବଶିଷ୍ଠ ସେ ବିଗୁର ॥
ମନକୁ ଚିହ୍ନି କର ଥୟ । ଚେତାକୁ ଖୋଜିବ ଉପାୟ ॥
ଚୈତନ୍ୟ ବକତା ଅଛନ୍ତି । ବାରି ହୋ ଚିହ୍ନ ତପୋବନ୍ତୀ ॥
ଏହାକୁ ଚିହ୍ନି ଠୁଳ କର । ହେତୁ ପଥକୁ ସୁଜେ ଧର ॥
କୁମନ ସମନ ସଙ୍ଗତେ । ଅମନେ କରିବ ଏକସ୍ଥେ ॥
ସୁମନ ସଙ୍ଗେ କର ମେଳ । ଶାନ୍ତ ମନକୁ କର ଠୁଳ ॥
ଏ ପାଞ୍ଚ ମନ ପଞ୍ଚଭୂତେ । ବସିଣ ଅଛନ୍ତି ଏକତ୍ରେ ॥
ସେ ପାଞ୍ଚ ଏକତ୍ର କରିବ । ନାସିକା ଅଗ୍ରେ ବସାଇବ ॥
ହରିବ ସର୍ବଠାରୁ ମନ । ଏକାଗ୍ରଚିତ୍ତେ ସାବଧାନ ॥
ଶୁଣ ହେ ତପିଷ୍ଠ ମହତ । ଅଟଳଖ ଭଜନର ସୂକ୍ଷ୍ମ ॥
ବାମ ଅଙ୍ଗକୁ ପାଡ଼ିକରି । ଫିଟାଇ ଦକ୍ଷିଣ ଅର୍ଗଳି ॥
ଜୀବ ପବନକୁ ଉଜାଣି । ଟେକିବ ମନ ସୃଜେ ଟାଣି ॥
ମନ ଦଉଡ଼ି ଛନ୍ଦିଦେଇ । ତ୍ରିକୂଟେ ବାନ୍ଧିବ ନଠାଇ ॥
ଓଁକାର ସୁଜେ ମନରଞ୍ଜି । ପରମ ପବନରେ ଖଞ୍ଜି ॥
ବାରଣ ଅନାହତ ନାଦ । ଉର୍ଦ୍ଧ୍ୱକୁ ଟୋଳିବ ସେ ପାଦ ॥
କାଉଁରମଣ୍ଡଳେ ପଶିବ । କମଳଦଳ ଆକର୍ଷିବ ॥
ତଥାଁ ଚୈତନ୍ୟମୂଳେ ହେତୁ । ଖଞ୍ଜାଇ ମହାଶୂନ୍ୟ ପଥୁ ॥
ଚନ୍ଦ୍ର ସୂର୍ଯ୍ୟ ଗମ୍ୟ ନୁହଇ । ବାଇ ଗମିବ ଅବା କାହିଁ ॥

ପରମସଙ୍ଗତରେ ନେବେ । ଅଭୟ ପୁର ଦେଖାଇବେ ॥
ଚହ୍ନିଲେ ଅଣାକାର ବ୍ରହ୍ମ । କଟିବ ଜନ୍ମ ମୃତ୍ୟୁ ଭ୍ରମ ॥
କଲ୍ୟାଣୀ ହୋଇବ ଏ ଦେହ । ନାହିଁ ଲାଗିବ ମାୟା ମୋହ ॥
ବସିଲା ଠାବରେ ଏ ବିଧି । ବୁଝିଲୁଟିକ ତପନିଧି ॥
ଚହ୍ନାଇ ଦେବା ଶୁଣ ତୋତେ । ଚହ୍ନି ତା ଥୋଇବୁ ଗୁପତେ ॥
କାହାକୁ ନ କହିବୁ କିଛି । ଦେହେ ଚହ୍ନିବ ଆତ୍ମା ବାଛି ॥
ସେ ବ୍ରହ୍ମଜ୍ଞାନ କର ଲୟେ । ଧାନ ଅଚ୍ୟୁତ ଲାବ କହେ ॥

ଇତି ଶ୍ରୀ ବ୍ରହ୍ମଶାଙ୍କୁଳ ଚନ୍ଦ୍ରକାନ୍ତ ହେତୁ ଭୂଷଣ୍ଡ-
ବଶିଷ୍ଠସମ୍ବାଦେ ଶ୍ରୀ ଗୁରୁଶିଷ୍ୟ ଉପଦେଶେ
ଦ୍ୱିତୀୟ କଳ୍ପ ଉକ୍ତଃ ।



## ତୃତୀୟ କଳ୍ପ ।

ଶ୍ରୀ ଭୂଷଣ୍ଡ ଉବାଚ ।

କହେ ପ୍ରଚଣ୍ଡର ନନ୍ଦନ । ଶୁଣ ବଶିଷ୍ଠ ତପୋଧନ ॥
ସେ ଅଣାକାର ଯନ୍ତ୍ର ସୂକ୍ଷ୍ମ । ପ୍ରକାଶି କହିବା ତଦନ୍ତ ॥
ନାକାସି ରନ୍ଧ୍ରେ ଯେଉଁ ବାଇ । ଚନ୍ଦ୍ର ସୂର୍ଯ୍ୟରେ ଯାଏ ବହି ॥
ଆବର ନିକୂଟ ଦୁଆରୁ । ବହଇ ପାଦେ ଶିଣ୍ଡ ମେରୁ ॥
ସେ ପାଦେ ବିନ୍ଦୁ ପ୍ରବେଶଇ । ଯୋଗିର ମୂଳ ଧାନ ସେହି ॥
ଶୁଣ ହେ ପଦ୍ମଯୋନି ସୁତ । ଉର୍ଦ୍ଧ୍ୱରୁ ବହେ ସେ ମରୁତ ॥
ଯେ ଅଟଇ ଅଣାହାର ପାଦ । ଶୂନ୍ୟମଣ୍ଡଳୁ ଝରେ ଶବ୍ଦ ॥
ପରମ ପୁରୁଷଟି ସେହି । ସକଳଭୂତେ ଅଛି ରହିଁ ॥
ଟେକନ୍ତା ଅର୍ଦ୍ଧ ପାଦ ଯେହୁ । ସେ ଅଣାକ୍ଷର ସୂକ୍ଷ୍ମ ତହୁଁ ॥
ଜୀବ ପୁରୁଷ ସେ ଅଟଇ । ଉଲଟି ଉର୍ଦ୍ଧ୍ୱକୁ ଧେୟଇ ॥
ସେ ପୁଣି ଚନ୍ଦ୍ରକାନ୍ତ ଆଦି । ପରମ ପୁରୁଷ ଅନାଦି ॥
ଯୁଗଳ ପ୍ରେମ ହୋଇ ଖେଳା । କରନ୍ତି ସର୍ବଭୂତେ ଲୀଳା ॥

ଆହ୍ବଟ ହାତ ଦେଉଳରେ । ତହିଁ ଅଛନ୍ତି ଏ ଘରରେ ॥
ସେ ଦଅ ଭୋଗ ନ ଇଛଇ । ଘରିଲେ ମୁକ୍ତି ଯାଚ ଦେଇ ॥
ଭରସା ଯେ କରନ୍ତି ତାଙ୍କୁ । ତା ଭୟ ନ ଥାଇ ଭବକୁ ॥
କହୁବା ଶୁଣ ହେତୁ ପୁଣ । ସେ ଆଦ୍ୟ ଚନ୍ଦ୍ର ଅଙ୍ଗେସ୍ଥିତ ॥
ନିରତ ମନ ତାଙ୍କୁ ଦେଇ । ବସିବ ନିର୍ଜନ ଘରବହିଁ ॥
ବାମ ଅଙ୍ଗରେ ଥିବେ ଯେବେ । ବାର୍ ଟେକିବ ବାର ତେବେ ॥
ବିଷ୍ଣୁ ସ୍ୱରୂପୀ କାନ୍ତ ତାର । ହୋଇଛନ୍ତି ସ୍ତ୍ରୀ ଲିଙ୍ଗ ଆକାର ॥
ମାନସ ସେବାର୍ଚ୍ଚନେ ବୁଡ଼ି । ପଦ୍ମ ଚରଣେ ଥିବ ପଡ଼ି ॥
ଉଠି ନିବେଶି ଶିରେ କର । ଯୋଗାଇ ଧୂପ ସେ କର୍ପୂର ॥
ମାର୍ଜନା କରିବ ଶ୍ରୀଅଙ୍ଗେ । ଚନ୍ଦନ କସ୍ତୂରୀର ସଙ୍ଗେ ॥
ଏହିଟି ତାର ମୂଳ ସେବା । ଏଥୁଁ ଅଧିକ ନାହିଁ ବାବା ॥
ସେବାର ଅନ୍ତେ ପାଦ୍ୟେ ପଡ଼ି । ଉଠିବ କରପଦ୍ମ ଯୋଡ଼ି ॥
ମାଗିବ ଦକ୍ଷିଣ ଭଜନ । ଏରୂପେ ନିତ ପ୍ରତିଦିନ ॥
ସ୍ଥିର ଦୃଷ୍ଟିରେ ହେତୁ ଯେବେ । ପ୍ରସନ୍ନ ଏକମାସେ ତେବେ ॥
ଯଦ୍ୟପି ଦୃଷ୍ଟି ବକ୍ର ଥିବ । ଷଡ଼ମାସରେ ପାଲଟିବ ॥
ସପ୍ତାଙ୍ଗ ବାର ତୀର୍ଥ ଯେତେ । ଏହା ସାଧିବ କି ନିମିତ୍ତେ ॥
ପ୍ରସନ୍ନ ହେଲେ ଆଦ୍ୟମାତା । କଟିବ ଭବଭୟ ଚିନ୍ତା ॥
ବନ୍ଧୁଟି ରହିବ ଅକଟି । ମରଣେ ପଡ଼ିଯିବ ଗଣ୍ଠି ॥
ସୂର୍ଯ୍ୟ ଅଙ୍ଗରେ ସର୍ବକାଳ । ଖେଳ କରିବୁ ବ୍ରହ୍ମବାଳ ॥
ନୋହିଲେ ସପ୍ତାଙ୍ଗ ସାଧନେ । ଆମ୍ଭାକୁ ଭେଟିବୁ ତୁ କେତେ ॥
ଭୂଲ ମରିବୁ ଯୋଗ ସାଧି । ପ୍ରାପତ ନୋହିବ ଅନାଦି ॥
ସେ ଯେ ସପ୍ତାଙ୍ଗ ଯୋଗ କର୍ମ । ଅନେକ ବାର ମତ ଭ୍ରମ ॥
ଅଶକ୍ୟ ସେବିବା କେମନ୍ତ । ଅନେକ ଅଛି ବିଘ୍ନ କୃତ୍ୟ ॥
ମାତାଙ୍କୁ ନ ସେବିଲେ ଚିହ୍ନି । କେମନ୍ତେ ହୋଇବ ବ୍ରହ୍ମଜ୍ଞାନୀ ॥
ସପ୍ତାଙ୍ଗ ସାଧିବୁ ତୁ ଯେବେ । ଅନେକ ଯତନେ ସିଦ୍ଧି ହେବ ॥
ମୁଁ ତାହା ବୁଝି ଅଛି ଗୁଣ୍ଡ । କହିଲୁ ବଶିଷ୍ଠ ହୋ ଫେଡ ॥
ଆମ୍ଭ ଯୋଗରେ ମୁଁ ନଷ୍ଟିନ୍ତ । ଗଲାଣି କୋଟିଯୁଗ ବିତ୍ତ ॥

ଶିଶୁ ଶବଦେ ଚିତ୍ତ ଦେଇ । ବ୍ରହ୍ମ ସ୍ୱରୂପ ଅଛୁ ଧ୍ୟାଇ ॥
ସାଧ୍ୟ ମୋ ଅଛୁ ଚନ୍ଦ୍ରକାନ୍ତ । ତେଣୁ ନିଶ୍ଚଳ ମୋର ମତି ॥
ଏକାନ୍ତ ଯେ ଜନ ସାଧିବ । ପରମ ଅଙ୍ଗେ ଲୀନ ହେବ ॥
କଲ୍ୟାଣୀ ହୋଇଥିବ ଦେହା । ଶୁଣ ବୁଝତି ପ୍ରାଣନାହା ॥
ଯେ ଗଙ୍ଗାଜଳେ ସ୍ନାନ କରୁ । ସେ କି ଲୋଡ଼ଇ କୂପବାରୁ ॥
ଚନ୍ଦ୍ରଙ୍କୁ ସେବନ୍ତି ଯେ ନର । କି କରେ ତାରପନ୍ତି ତାର ॥
ସୂର୍ଯ୍ୟଙ୍କୁ ଯେ କରେ ଭକତି । ସେ କମ୍ପା ଯିବ ଗ୍ରହାକତି ॥
ନୃପତି ସେବନ୍ତି ଯେ ପ୍ରାଣୀ । ସେ କମ୍ପା ପାନ ମନ୍ତ୍ରୀ ଗଣି ॥
ଅମୃତ ଭୋଜନ ଯେ କରେ । ଶାକ ଭକ୍ଷିବ କି ଆଦରେ ॥
ସେ ଘଟେ ଅଟେ ଆତ୍ମାଯୋଗ । ଭୋମୁନ ହୋଇବା ସବାଗ ॥
ସେ ଆତ୍ମା ଚହ୍ନି କର ପାବ । ହୋଇବ ତ୍ରିପୁରେ ଦୁର୍ଲ୍ଲଭ ॥
ହେତୁ ସାଙ୍କୁଳ ବ୍ରହ୍ମପାଦେ । ଖଟାଅ ନିଷ୍କାମ ନବେଦେ ॥
ସକଳ କର୍ମ ମାନ ତେଜ । ଏକବ୍ରହ୍ମକୁ ଦୃଢ଼େ ଭଜ ॥
କହଇ ଅଚ୍ୟୁତ ପାମର । ଭୂଷଣ୍ଡ ବଶିଷ୍ଠ ବଗୁର ॥
ଯେ ଏହା ଶ୍ରବଣେ ଶୁଣିବେ । ତ୍ରିଗୁଣ ତାପୁଁ ଉଦ୍ଧରିବେ ॥
ବ୍ରହ୍ମପରତେ ହେବ ମତି । ନଥିବ ଭବ ଭୟେ ଭୀତି ॥

ଇତି ଶ୍ରୀ ବ୍ରହ୍ମଶାଙ୍କୁଳିବର୍ଣ୍ଣନେ ଚନ୍ଦ୍ରକାନ୍ତ ହେତୁ
ଭୂଷଣ୍ଡବଶିଷ୍ଠସମ୍ବାଦେ ଶ୍ରୀଗୁରୁ ଉପଦେଶ
ତୃତୀୟ କଳ୍ପ ଉକ୍ତଃ ॥



## ଚତୁର୍ଥ କଳ୍ପ ।

ବଶିଷ୍ଠ ଉବାଚ ।

ବଶିଷ୍ଠ ବୋଲନ୍ତି ଭୂଷଣ୍ଡ । ଭଲ ସାଧିଛୁ ଜ୍ଞାନଖଣ୍ଡ ॥
ଅପୂର୍ବ ପ୍ରାୟେ ଲାଗେ ମୋତେ । ଏହା ତୁ ସାଧିଲୁ କେମନ୍ତେ ॥
ପରମ ପବନ ତୋ ବାଣୀ । ଅମୃତ ପ୍ରାୟେ ଲାଗେ ଶୁଣି ॥
ମୋତେ ଦୟା ତୋ ଚିତ୍ତେ ଯେବେ । କହ ପ୍ରଶନ ସିଦ୍ଧ ତେବେ ॥

ଅନେକ ଜନ୍ମେ ଭାଗ୍ୟ ମୋର । ଭେଟିଲି ଚରଣ ତୁମ୍ଭର ॥
ସେ ଦେବ ଅଣାକାର ସ୍ୱାମୀ । ଅଲେଖ ଗୁରୁ ଅନ୍ତର୍ଯ୍ୟାମୀ ॥
କି ଭାବେ ବରାଟଶରୀରେ । ଗୁପତେ ଖେଳନ୍ତି ଶ୍ରୀଧରେ ॥
ମୁନି ଯୋଗୀନ୍ଦ୍ର ତପ ତପି । ଅଷ୍ଟାଙ୍ଗ ଯୋଗେ ଯାଙ୍କୁ ଜପି ॥
ନ ପାଇ ତାଙ୍କ ଆଦ୍ୟଅନ୍ତ । ସେ ବ୍ରହ୍ମ ଗୁପତରୁଁ ଗୁପତ ॥
କି ରୂପେ ଲଭିବା ତାହାକୁ । କହ ସନ୍ଦେହ ଯେବେ ମୁଖୁଁ ॥
ଏମନ୍ତ ବଶିଷ୍ଠ ବଚନ । ଶୁଣି ଭୁଷୁଣ୍ଡି ତୋଷମନ ॥
ବୋଲନ୍ତି ଶୁଣ ଆହେ ଋଷି । ଅନାଦି ମହାଶୂନ୍ୟବାସୀ ॥
ଅମନ ଶିଖେଛନ୍ତି ରହି । ନିଷ୍କାମେ ନିର୍ବିକଳ୍ପ ଦେହୀ ॥
ନାହିଁ ତାହାଙ୍କର ବିକାର । ଅବନାମଣ୍ଡଳ ଈଶ୍ୱର ॥
ମହାଶୂନ୍ୟ ପରେ ବିଜୟ । ପୂର୍ଣ୍ଣ ଶଶାଙ୍କ ତେଜମୟ ॥
ଆଜ୍ଞାରେ ପରମ ଓଗର । ସେ ଭୂତ ମହିମା ଈଶ୍ୱର ॥
ଏକୋଇଶ ବ୍ରହ୍ମାଣ୍ଡେ ସଞ୍ଚରେ । ନାହିଁ ସ୍ୱରୂପ ଅରୂପରେ ॥
ଚନ୍ଦ୍ର ସୂର୍ଯ୍ୟରେ ନିତ ଫେରେ । ଆବର ସୁଷୁମ୍ନାଦ୍ୱାରେ ॥
ଜିପାଦେ ଯନ୍ତ୍ର ତନ୍ତ୍ର ବହି । ତିନି ତ୍ରୈଲୋକେ ସେ ଉଦୟେ ॥
ନିର୍ବାଣ ତେଜ ସଦାକାଳେ । ନିବୃତ୍ତି ସିଦ୍ଧ ମହାନଳେ ॥
ଚାହିଁ ଭଜିଲେ ତାଙ୍କୁ ପାଇ । ଶୁଣ ହୋ ବ୍ରହ୍ମାଙ୍କ ତନଇ ॥
ସେ ପାଦେ ଆଶ୍ରୟ ଯେମନ୍ତ । କହିବା ଶୁଣ ତପୋବନ୍ତ ॥
ଶୂନ୍ୟ ମଣ୍ଡଳୁଁ ଯେଉଁ ପାଦ । ଝରୁଛି ଅନାହତ ଶବ୍ଦ ॥
ସେ ଅଟେ ପରମପୁରୁଷ । ଅନାଦି ସିଦ୍ଧ କଳହଂସ ॥
ଟେକନ୍ତା ପାଦ ଅଟେ ଜୀବ । ସେ ମୁନି କର ଏହା ଠାବ ॥
ଚନ୍ଦ୍ରକାନ୍ତିକ ପାଲଟାଇ । ସୂର୍ଯ୍ୟ ଅଂଗରେ ହେତୁ ଥୋଇ ॥
ପାଞ୍ଚମନକୁ କରଠୁଳ । ନିବାତ ଦୀପ ପ୍ରାୟେ ଜାଳ ॥
ଚଞ୍ଚଳ ଚିତ୍ତ ସ୍ଥିରେ ରୁନ୍ଧ । ତେବେ ଚୈତନ୍ୟ କର ବନ୍ଦୀ ॥
ହେତୁର ମୂଳେ ଧର ଟାଣି । ବହନ୍ତା ନାସିକ ଉଜାଣି ॥
ଧୀରେ ସୁଧୀରେ ମନ ସୂଜେ । କ୍ଷଣେ ନିମିଷେ ଦଣ୍ଡେ ନତେ ॥
ଉଜାଣ ଲକ୍ଷ୍ୟ ଯୋଗ ଖଟ । ତ୍ରିକୂଟେ ପାଡ଼ିଶ କପାଟ ॥

କଣ୍ଠ ଘଟିକା ସୁନ୍ଧେ ଭଙ୍ଗ । ଆକର୍ଷି ହେବୁ ପନ୍ଥ ଚଢ଼ି ॥
ମେରୁ ଦୁଆରେ ମୁଦ୍ରା ପାଡ଼ି । ବସ ତୁ ଉଜାଣିକି ଭଡ଼ ॥
ଶିଖେ ଷେପିଲେ ସେ ଝର୍ଝର । ମେଳା ହୋଇବ ପରମର ॥
ସେ ଦେବ ଦେଖାଇବେ ନେଇ । ନିତ୍ୟ ମହିମା ନିତ୍ୟଭୁଇଁ ॥
ବ୍ରହ୍ମଦର୍ଶନେ ଜନ ଦୁଖ । ହେଲେ ଲଭିବ ଆତ୍ମାସୁଖ ॥
ପରମେ ପରତେ ହୋଇଲେ । ଆଉ କି ଗତି ଅଛି ପରେ ॥
ଏକୌଶ ଭୁବନରେ ସାର । ଏ ଯେ ଭରତ ସତ୍ୟପୁର ॥
ଏ ଯଶ କହିଲେ ନ ସର । ଯେ ଭୁତେ ପରମ ଈଶ୍ୱର ॥
ତାଙ୍କୁ ଯେ ଲୋଡ଼ନ୍ତି ବଶିଷ୍ଠ । ତାଙ୍କୁ ନ ଥାଇ ଭବେ କଷ୍ଟ ॥
ସେଷୁ ଦୁଆରେ ମୁଦ୍ରାବନ୍ଧେ । ଟେକି ଉଜାଣି ସୁନ୍ଧଛନ୍ଦେ ॥
ଝରକା ବାମ ଦକ୍ଷିଣରେ । ବନ୍ଧୁ ଯେ ଥିବ ଧୀରେ ଧୀରେ ॥
ଶଙ୍ଖୁଳି ଛନ୍ଦ ସିନା ସେହି । ଉଜାଣି ବଳାଇଲେ ତହିଁ ॥
ଘଟୁଆଳକୁ ପାଇ ଦେଖା । ତେବେ ପାଇବ ହେରୁ ଶିଖା ॥
ପରମ ମହାଶୂନ୍ୟ ପଥେ । ତେବେ ଦେନାଇଁ ଯିବେ ତୋତେ ॥
ଦର୍ଶନ କରିବ ଅଲେଖ । କଟିବ ଯାତନାର ଦୁଖ ॥
ତହିଁ ଉପରେ ବ୍ରହ୍ମବସ୍ତି । ତାଙ୍କ ଦୁଆରେ ବୃକ୍ଷ ଅଛି ॥
ସେ ବୃକ୍ଷ ନାମଟି ଅନାମ । ସୃଷ୍ଟି ସର୍ଜନା ତହୁଁ ଜନ୍ମ ॥
ତହିଁକି ବଳାଇଲେ ବାତ । ଯୁଗ ଯୁଗାନ୍ତରେ ନିଷ୍ଟିନ୍ତ ॥
ତାମୂଳେ ପରମର ବାସ । ବ୍ରହ୍ମ ପାଦରୁ ପରକାଶ ॥
ଯେ ତାଙ୍କୁ ନ ଲୋଡ଼ନ୍ତି ହେଲେ । ବପନ୍ଥା ବସେ ମନ ବଳେ ॥
ସେ ହଂସ ବସୁରଇ ଚଢ଼ି । ଉଡ଼ି ଯିବାକୁ ପାଞ୍ଚେ ନିତ୍ୟ ॥
ତାହାକୁ କର ତୁ ଆକଟ । ଡେଣାରୁ ପକ୍ଷୀ ଧରି କାଟ ॥
ପବନ ଦଶ ଏ ଦୁଆରେ । ନିରୋଧ କରୁ ବାରୁବାରେ ॥
ବାମ୍ଫୁ ଯେ ଅଣଗୃଣ ଛନ୍ଦି । ତେବେ ପଡ଼ିବ ହଂସା ବନ୍ଦୀ ॥
କୁଣ୍ଡଳି ଚକ୍ର ଷଟପଦ୍ମ । ତହିଁକି ଗଲେଣ୍ଟି ପବନ ॥
ଏ ଯଶ ସବୁ ଦିନେ ଥିବ । ଶୁଖିଲା ବୃକ୍ଷ ପଲ୍ଲବିବ ॥
ମନ ପବନ ଦୃଢ଼ ଛନ୍ଦି । ପ୍ରକୃତି ଧରି କର ବନ୍ଦୀ ॥

ଚନ୍ତା ସଳଖେ ହେତୁ କର । ତହିଁ ଚୈତନ୍ୟ ବେନ ଧର ॥
ତିନ ତିହ୍ନୁଡ଼ ମଧ୍ୟେ ନାଡ଼ି । ତହିଁ କମାଚ୍ଛ ପାଠ ଶାଳ ॥
ଯନ୍ତ୍ର ପବନ ଧେନ୍ନ ବସି । କର୍ମ ଗନ୍ଧୁଛୁ କାମ ଧ୍ୱଂସି ॥
ଗଙ୍ଗା ଯମୁନା ନଦୀଠାରେ । ଗଣ୍ଠି ପଡ଼ିଛୁ ତ୍ରିକୂଟରେ ॥
ହେନ୍ମ ଗଣ୍ଠି ଘକାରେ ଛନ୍ଦଣୀ । ତାହାକୁ ଚନ୍ଦ୍ରି ବଳାପାଣି ॥
ତହିଁ ଦୁଆରୀ ମହାମାୟୀ । ଘାଟ ଜଗିଛୁ ବସି ତହିଁ ॥
ତାହାକୁ ପରଚେ କରାଇ । ବୋଧିଲେ ଭିତରକୁ ଯାଇ ॥
ନୋହିଲେ ଯେ ଯେତେଡ଼ ହୋଇବ । ଦ୍ୱାର ଗ୍ରୁଡ଼ଲେ ସିନା ଯିବ ॥
ଚେଣିକ ଅଛୁ ଯେ ଭବଷ । ଦେବେ ଜପାନ୍ତ ତହିଁ ଲେଶ ॥
ଯୋଗ ସେ କରତା ନୁହନ୍ତ । ଭାବିଲେ ମୁକ୍ତ ଯାଚ ଦ୍ୟନ୍ତ ॥
ଶୁଣି ବଶିଷ୍ଠ କୃତ କୃତ । କହଇ ପାମର ଅଚ୍ୟୁତ ॥

ଇତି ଶ୍ରୀ ବ୍ରହ୍ମଶାଙ୍କୁଳବର୍ଣ୍ଣନେ ଚନ୍ଦ୍ରକାନ୍ତ ହେତୁ ଭୂଷଣ୍ଡ
ବଶିଷ୍ଠସମ୍ବାଦେ ଶ୍ରୀ ଗୁରୁଶିଷ୍ୟ ଉପଦେଶେ
ଚତୁର୍ଥ କଲ୍ପ ଉକ୍ତଃ ।



## ପଞ୍ଚମ କଲ୍ପ ।

ଶ୍ରୀ ବଶିଷ୍ଠ ଉବାଚ ।

କହନ୍ତ ବ୍ରହ୍ମାଙ୍କର ସୁତ । ଶୁଣ ହେ ପରମ ମହତ୍ତ୍ୱ ॥
ଯେ ଯଷ ଲଭ ଅଛ ବସି । ସକଳ କହିବ ପ୍ରକାଶି ॥
ଗୁପତ ନ କର କହିବ । ଯଶ ତୋ ଯୁଗେ ଯୁଗେ ଥିବ ॥

ଶ୍ରୀ ଭୂଷଣ୍ଡ ଉବାଚ ॥

ଶୁଣ ହୋ ବ୍ରହ୍ମାର ନନ୍ଦନ । ଏ ଯେ ପରମ ଗୁପ୍ତଧନ ॥
ଭୂତବେହାରୀ ଭୂତେ ଛନ୍ତି । ଠୂଳ ଉପରେ ନିଜ ଶକ୍ତି ॥
ଦୃଶ୍ୟ ନୁହଇ ଦିବ୍ୟ ଭୂମି । ଅନନ୍ତ ଲୋଚନରେ ଗମି ॥
ଏ ଗୁପ୍ତ ହେତୁ ଆଦ୍ୟଶକ୍ତି । ହରଣ କରୁଅଛୁ ନିତି ॥

ଶୈରକୁ ପ୍ରୀତି ବଶ କର । ନିରୋଧି ଜଗିଥିବ ଦ୍ୱାର ॥
ଧନ ସେ ଯୋଗିଗଲେ ଜାଣ । ସରିବ ସବୁ ବଡ଼ପଣ ॥
ତେଣୁ କହୁଛୁ ମୁନି ଯେତେ । ପଶ୍ଚାତେ ନବାଛୁରୁ ମୋତେ ॥
ଯେବେ ହୋଇବ ପିଣ୍ଡମୋକ୍ଷ । ଅଭକ୍ଷ୍ୟ ଦ୍ରବ୍ୟକୁ ତୁ ଭକ୍ଷ ॥
ବଶିଷ୍ଠ ବୋଇଲେ ଭୁଷଣ୍ଡି । କହିଲ ଯେଉଁ ଜ୍ଞାନ ଖଣ୍ଡି ॥
ତହିଁରେ ମନ ମୋର ରସେ । କହ ସାଧିବା କାହିଁ ବସି ॥
ଭୁଷଣ୍ଡି ବୋଲେ ଶୁଣ ତାହା । ପରତେ ହେବା ଯାଏ କାୟା ॥
ଗିରି କନ୍ଦର ନିର୍ଘାତ । ନ ଥିବେ ଜନ ଲୋକ ଭେଟ ॥
ଏମନ୍ତ ସ୍ଥାନେ ଜ୍ଞାନ ସାଧି । ଆହାର ପାରିଲେ ନିରୋଧି ॥
ଯଦି ସଙ୍ଗତେ ଥିବେ ସଖା । ପରମ ଆତ୍ମା ସଙ୍ଗୀ ଏକା ॥
ନିରତେ ସୁବୃତ୍ତି ବିଳାପ । ବୃତ୍ତି ଚହ୍ନିଲେ ସିଦ୍ଧ କଳ୍ପ ॥
ଦେଶିକ ଯହିଁ ଇଚ୍ଛା ତହିଁ । ନିଗମେ ଥିବ ହେତୁ ଧାଇ ॥
ଶୁଣି ପୃଚ୍ଛନ୍ତି ବ୍ରହ୍ମାସୁତ । ଆନନ୍ଦେ ଭୁଷଣ୍ଡି ଅଗ୍ରତ ॥
ହେ ମହାମୁନି କହ ମୋତେ । ମୋ ମନ ବଢ଼ାଇ ଅପ୍ରତେ ॥
ତୁ ଯେ ବୋଇଲୁ ଜ୍ଞାନେ ପଶ । ଆହାର ନ ଭକ୍ଷିଲେ ହଂସ ॥
କେମନ୍ତେ ରହିବ ଏ କାୟା । ଏକଥା କଲୁ ମୋତେ ମାୟା ॥
ହଂସା ଉଡ଼ନ୍ତେ ଆତ୍ମା ହାନି । ଜ୍ଞାନ ସାଧିବା କାହାପେନି ॥
ଭୁଷଣ୍ଡି କହେ ମୁନିଶୁଣ । କହିବା ତହିଁ ଆଚରଣ ॥
ଉଜାଣି ତୋଳିଲେ ନିର୍ଝର । ମନ ପବନ କର ସ୍ଥିର ॥
ତ୍ରିକୂଟ ଉପରେ ଗୁହିଁବୁ । ତରୁଣି ମଣିକୁ ଭେଟିବୁ ॥
ସେ ମହାମାତ୍ମୀ ଦ୍ୱାରେ ଅଛି । ମାଗିଲେ ଭିକ୍ଷା ଦେବ କିଛି ॥
ସେ ତୋତେ ପ୍ରସନ୍ନ ବଦନେ । ଭିକ୍ଷା ଯା ଦେବ ତୋଷମନେ ॥
ତାହା ତୁ ଭକ୍ଷିବୁ ହେ ମୁନି । ହେତୁ ଅଣସାଧନା ପେନି ॥
ସେ ଭିକ୍ଷା ଦେବ ତୋତେ ଯାହା । ଶୁଣ ପ୍ରକାଶି ଏବେ ତାହା ॥
ଶୂନ୍ୟରେ ଥାଇ କି କି ଧନ । ପବନ ବିନା ନାହିଁ ଆନ ॥
ଆନ ଦ୍ରବ୍ୟଟି ନୋହେ ଲେଖା । ପବନ ଭିକ୍ଷା ପ୍ରାଣ ସଖା ॥
ପ୍ରକୃତି ପଞ୍ଚଗୁଣ ଦେଇ । ଭକ୍ଷିଣ ଭିକ୍ଷା କରିବାଇ ॥

ଏ ସାଧ ହେବା ଯାଏ ତୋର । ହୃଦ୍ର ଆହାରେ ତନୁଧର ॥
ସମସ୍ତ ସଙ୍ଗେ ସଙ୍ଗ ହେବୁ । ଅନ୍ତର ନମେଳେ ରହିବୁ ॥
ଚନ୍ଦ୍ରକୁ ନେଇ ସୂର୍ଯ୍ୟେ ଭର । ସୂର୍ଯ୍ୟରେ ଜାଗି ହେବୁ ଧର ॥
ଦେହକୁ ବଇରଛି ଗ୍ରହ । ତାହା ପାରିବ ଯେବେ ଖାଇ ॥
ତେବେ ହୋଇବ କାର୍ଯ୍ୟ ସିଦ୍ଧି । ତୋତେ କହିଲୁଁ ଜ୍ଞାନବଧି ॥
ନର୍ଯ୍ୟାଙ୍କ ଏ ଅଣସାଧନା । ଏହି ଉପଦେଶେ କରଦେନା ॥
ଅକ୍ଷରମାନଙ୍କୁ ନ ଖୋଜ । ଅଣଅକ୍ଷରେ ଚଉ ମନ୍ତ୍ର ॥
ଶୁଣି ବଶିଷ୍ଠ ପଚ୍ଛରନ୍ତି । ଶୁଣ ହୋ ପ୍ରଚଣ୍ଡର ବଶି ॥
ଯାହା କହିଲ ଜ୍ଞାନ ମତେ । ଗ୍ରହ କ ଭକ୍ଷିବା କେମନ୍ତ ॥
ଭୂଷଣ୍ଡି କହେ ମୁନି ଶୁଣ । କହିବା ତତ୍ତ୍ୱ ମନେ ଦେନ ॥
ଗ୍ରହକ ନ କର ସନ୍ଦେଶ । ଜ୍ଞାନ ସାଧିଲେ ଯିବ ନାଶ ॥
ଚନ୍ଦ୍ର ଅର୍କ ଗ୍ରହେ ସମ୍ଭାଇ । ନାଡ଼ି ଉଜାଣିକି ଚଳାଇ ॥
ମନଦଉଡ଼ି କର ଛନ୍ଦ । ବାରିବ ଅନାହତ ନାଦ ॥
ଆଦିତ୍ୟ ତେଜେ ଗ୍ରହ ନାଶ । ଶୁଣ ହେ ପ୍ରଜାପତି ଶିଷ୍ୟ ॥
ସେ ଗ୍ରହ ପୋଡ଼ିଯିବ ଯେବେ । ଦେଉଳେ ଦିଅଁ ଥିବ ତେବେ ॥
ଅତି ଗୁପତ ବ୍ରହ୍ମରନ୍ଧ୍ର । ନିତ୍ୟ ସେ ଦ୍ୱାରେ ମନ ଛନ୍ଦ ॥
ନାସା ପବନ ଯେବେ ଛନ୍ଦ । ତେବେ ପଡ଼ିବ ହଂସା ବନ୍ଦ ॥
ଅଗ୍ନି ପାଣିକି ଏକ କର । ଚୌଷଠିରୋଗ ହେବ ଦୂର ॥
ବିଷୟାବିଷ ହେବ ହତ । ମନକୁ ଦକ୍ଷିଣେ ନିବୃତ୍ତ ॥
ପାଣି ରହିବ ସରୋବରେ । ଘୋର ଯେ ନ ପଶିବ ଘରେ ॥
ପବନ ଉଜାଣି ଲହଡ଼ି । ଯିବ ଯେତେକ ଧାର ବଢ଼ି ॥
ପଶ୍ଚିମ ଦିଗେ ବନ୍ଧ ନାବ । ଖାଇ ବୋହୂକୁ କର ଠାବ ॥
ତାହାକୁ ଜେଠାଶୁର ଭେଟୁ । ଅଣଯୋଗକୁ ଜ୍ଞାନ ଖଟୁ ॥
ପରମପାଦେ କର ଆଶ । ତେଣାରୁ ପକ୍ଷୀ କର ନାଶ ॥
ପକ୍ଷି କାଟିଲେ ଜ୍ଞାନ ଦିଶୁ । ଭ୍ରମର କମଳରେ ପଶୁ ॥

ଦୁଇ ଏକତ୍ର କର ଠାବେ । ଅଦେଖା ଭୂଇଁ ଦେଖ ଏବେ ॥
ଏ ମନେ ଭୂଷଣ୍ଡ ଭକତ । କହିଲେ ପାମର ଅଚ୍ୟୁତ ॥

ଇତି ଶ୍ରୀ ବ୍ରହ୍ମଶାଙ୍କୁଳବର୍ଣ୍ଣନେ ଚନ୍ଦ୍ରକାନ୍ତଦେବରୁ ଭୂଷଣ୍ଡ ବଶିଷ୍ଠ,
ସମ୍ବାଦେ ଶ୍ରୀ ଗୁରୁଶିଷ୍ୟ ଉପଦେଶେ
ପଞ୍ଚମ କଳ୍ପ ଉକ୍ତ ।



## ଷଷ୍ଠ କଳ୍ପ ।

### ଶ୍ରୀ ଭୂଷଣ୍ଡ ଉବାଚ ।

କହେ ପ୍ରଚଣ୍ଡ ସୁତ ଭାବେ । ଶୁଣ ବଶିଷ୍ଠ କହୁ ଏବେ ॥
ଯେବେ ଚରମେ ହେବୁ ମେଳା । ମନ ଏକାଗ୍ରଚଉେ ଚଳା ॥
ତୋତେ ମୁଁ କହୁଅଛି ଯାହା । ବ୍ରହ୍ମାଦି ଦେଖି ନାହିଁ ତାହା ॥
ନିଶ୍ଚୂତ ଯୋଗର ଲକ୍ଷଣ । ତାହା କହିବା ମୁନି ଶୁଣ ॥
ନିଗମ ସ୍ଥାନେ କର ବାସ । ଗୁଡିବ ପ୍ରକୃତିର ଆଶ ॥
ନିର୍ଧୂମ ଅଗ୍ନି ଶିଖେ ଜାଳି । ନାଶିବ ଦୁଃଖ ସୁଖ ମଳି ॥
ତହିଁ ଚୈତନ୍ୟ ହେତୁ ମୂଳେ । ପବନ ନିରୋଧିବ ଠୁଳେ ॥
ତ୍ରିଗୁଣ ରସୁ ହାଦେ ଛନ୍ଦି । ସୁହଂସ ଧରି କର ବନ୍ଦି ॥
ନିଶ୍ଚୂତ ଯୋଗର ଏ ଗୁଣ । ନିଶ୍ଚଳ ଧ୍ୟାନ ଅଭ୍ୟାସଣ ॥
ମନ ଏକାଗ୍ର ଚଉେ ବସ । ଆତ୍ମାଟି ଆତ୍ମା ଭାବେ ଦୃଶ୍ୟ ॥
ବସିବା ଠାବେ କର ଲକ୍ଷ୍ୟେ । କାହିଁକି ନ ଚଳିବ ପାଷେ ॥
ନୟନ ଥାଉ ହେବ କଣା । ନାସା ଥାଉ ବାସନ ଘେନା ॥
ଶ୍ରବଣ ଥାଉଁ ନ ଶୁଣିବ । ବଧିର ପ୍ରାପ୍ତ ହୋଇଥିବ ॥
ମୁଖଥାଉଁ ଜଡ ଆକୃତ । ତେବେ ମାୟାରୁ ଯିବ ବ୍ରତ ॥
ସାଧିବ ନାହିଁ ଅସାଧନେ । ଭାରି ଚହ୍ନିବ ହେରୁମନେ ॥
ବାମାଙ୍କ ପ୍ରହ୍ଲଣ କଷାଟି । ମେରୁ ପଥରେ ଦେବ ଗଣ୍ଠି ॥

ଏ ହେତୁ ଅଭ୍ୟାସିଲେ ନିତ୍ୟ । ବ୍ରହ୍ମ ଚନ୍ଦ୍ରିକ ଆତ୍ମାଭୂତେ ॥
ନିଶ୍ଚିତ ଯୋଗେ ଏ ଲକ୍ଷଣ । ଏବେ କହିବା ମୁନି ଶୁଣ ॥
ପରମ ସାଧ୍ୟ ଆତ୍ମା ଯୋଗ । ଶୁଣ ତହିଁର କର୍ମଯୋଗ ॥
ଏ ଘଟ ଯୋଗ ଯେବା ଜାଣେ । ସେ ବେଦ ଶାସ୍ତ୍ରହିଁ ନ ଗଣେ ॥
ଶୀତାକୁ ନ କରେ ଶୋଚନା । ବୋଲଇ ପଥର ଏ ସିନା ॥
ସଂସାରେ ଦେବାଦେବୀ ଯେତେ । କାହାକୁ ନ ଗଣଇ ଚିତ୍ତେ ॥
ମୁଖରେ ନ କହଇ ବାଣୀ । ଗର୍ଭକୁ ନାହିଁ ଅନ୍ନ ପାଣି ॥
ଶୁଖିଲ ତରୁ ପ୍ରାୟେ ଅଙ୍ଗ । କାହାର ତୁଲେ ନୋହେ ସଙ୍ଗ ॥
ପଦ୍ମ ଆସନେ ନିତ୍ୟ ଥାଏ । ଉଦୟ ଠାରୁ ଅସ୍ତ ଯାଏ ॥
ଏ ଯୋଗ ସ୍ୱଖେବେଟି ବଡ଼ । କାୟାକୁ ସିନା ବାୟୁ ବାଡ଼ ॥
ରବିର ଘରେ ଚନ୍ଦ୍ର ସାଜ । ଯିବଟି କାଳ ବେଳ ଖଜ ॥
ଚନ୍ଦ୍ର ସୂର୍ଯ୍ୟଙ୍କୁ କଲେ ଶୋଷି । ବିଷମ ବ୍ରହ୍ମ ଅଗ୍ନି ଉଠି ॥
ପ୍ରଳୟ ତାକୁ ନ ବାଧଇ । ହେବେଟି ସିଦ୍ଧଅଙ୍ଗ ହୋଇ ॥
ଯେବେ ତୁ ସାଧିବୁ ଉଜାଣି । କ୍ଷେପିବ ଗଗନକୁ ପାଣି ॥
ତେବେ ପରମେ ହୋଇ ମେଳ । ଶିଖେ ଭେଟିବ ଆଦିମୂଳ ॥
ସେ ଆଦି ଶୋନଯିବ ସଙ୍ଗେ । ଦେଖି ପଶିବୁ ବ୍ରହ୍ମଅଙ୍ଗେ ॥
ଗାଲଟି ଯିବ ବ୍ରହ୍ମ ଅଙ୍ଗ । କାଳେ ନୋହିବ ହେତୁ ଭଙ୍ଗ ॥
ଏ କଥା ପ୍ରମାଣ ପ୍ରଛନ୍ନ । ମନ ଭିତରେ ଅଛି ଜ୍ଞାନ ॥
ମାୟା ଉହାଡ଼ ହୋଇଅଛି । ତେଣୁଟି ବାର ନ ଦିଶୁଛି ॥
ବାସନା ତାର ଯେ ଚହ୍ଲିବ । ହେତୁ ଆଶ୍ୱତ ନିତ ଦେବ ॥
ବିଷୟାବିଷମ ମଦରେ । ଲାଗି ଅଲଗା ନିରନ୍ତରେ ॥
ଦମ୍ଭେ ନ କହିବ ବଚନ । ଦେଖିବ ତ୍ରିପୁର ସମାନ ॥
ମନ ମନ୍ତ୍ରଙ୍କେ ନୋହି ମେଳା । ନିତ୍ୟ ସାଙ୍ଖ୍ୟ କର୍ମେ ଖେଳା ॥
ଏକାନ୍ତ ଭାବେ ଯେ ପ୍ରବର୍ତ୍ତି । ସେ ନିଷ୍ଠା ଲଭେ ନିଜବୃତ୍ତି ॥
କହିଲୁ ବଶିଷ୍ଠ ହେ ତୋତେ । ମନ ସହଜ ହେତୁ ପଥେ ॥
ରଜ ତାମସ ଗୁଣ ତେଜ । ନିର୍ଗୁଣ ସାର ବ୍ରହ୍ମ ଭଜ ॥
ସକଳ ସଙ୍ଗ ତ୍ୟାଗକର । ସମତା ଚିତ୍ତବୃତ୍ତି ଧର ॥

ଲୋକ ବେଭାର ଜନ ମେଳେ । ଥାଇ ନ ଥିଲା ଭଳି ଖେଳେ ॥
ଏମନ୍ତ ମତ ଯେବେ ଧରୁ । ଭେଟିବୁ ଅନାଦି ଶ୍ରୀ ଗୁରୁ ॥
ନୋହିଲେ ମିଳିବ ସେ କାହିଁ । କର୍ମେ ତାହାଙ୍କୁ ଭେଟ ନାହିଁ ॥
ଏମନ୍ତ ଭୁଷଣ୍ଡ ବଚନ । ଶୁଣି ବଶିଷ୍ଟ ତୋଷମନ ॥
ବୋଲନ୍ତି ଶୁଣ ହେ ମହତ୍ୱ । ତୁ ଯାହା କହିଲୁ ଏ ସତ୍ୟ ॥
କଥାଏ ପଚାରଇ ତୋତେ । ଫେଡ଼ି କହିବ ମୋ ଅଗ୍ରତେ ॥
ପରମ ରସ ଥାଇ ଜୀବ । ବିନା ଆହାରେ ହଂସ ଥିବ ॥
ଦୁର୍ବଳ କାୟାଗୋଟି ହୋଇ । ଅବର୍ଣ୍ଣ ରୂପ ପାଲଟଇ ॥
ଆବର ପ୍ରସଙ୍ଗ ସଙ୍କେତ । କହ ପ୍ରଚଣ୍ଡ କାକସୁତ ॥
ବାହ୍ୟେ କ ରସ ମୂଳଅଛୁ । ସେ ଗୁପ୍ତ କହ ମୋତେ ବାଛୁ ॥
ଭକ୍ଷିଲେ ବିନା ଆଧାରେଟି । ସବଳ ଥିବ କାୟାଗୋଟି ॥
ଏମନ୍ତ କହି ବ୍ରହ୍ମାସୁତ । ଭୂଷଣ୍ଡେ କଲେ ପ୍ରଳମ୍ବିତ ॥
ଚନ୍ଦ୍ରତୋଳା ତଟ ନିବାସୀ । କହେ ଅଚ୍ୟୁତ ବ୍ରଜଅଂଶୀ ॥
ମୋ ନାମ ଅଟଇ ଅଚ୍ୟୁତ । ସୁଜନେ ଏଣେ କର ମତ ॥
ଏଗ୍ରନ୍ଥ ଶ୍ରବଣ ପଠନେ । ନିତ୍ୟ ଅଭ୍ୟାସ ଦୃଢ଼ମନେ ॥
ବ୍ରହ୍ମଜ୍ଞାନକୁ ଯିବ ଚିତ୍ତ । କହଇ ପାମର ଅଚ୍ୟୁତ ॥

ଇତି ଶ୍ରୀ ବ୍ରହ୍ମଶଙ୍କୁଳିବର୍ଣ୍ଣନେ ଚନ୍ଦ୍ରକାନ୍ତହେତୁ
ଭୂଷଣ୍ଡ ବଶିଷ୍ଟ ସମ୍ବାଦେ ଶ୍ରୀଗୁରୁ ଶିଷ୍ୟ
ଉପଦେଶେ ଷଷ୍ଠ କଳ୍ପ ଉକ୍ତଃ ।



## ସପ୍ତମ କଳ୍ପ ।

ଶ୍ରୀ ଭୂଷଣ୍ଡ ଉବାଚ ॥

ଶୁଣ ହୋ ପଦ୍ମ ଯୋନି ସୁତ । ତୁ ଯାହା ପୁଚ୍ଛିଲୁ ତଦନ୍ତ ॥
କହିବା ଫେଡ଼ିଣ ସନ୍ଦେଶ । ସେ କଳ୍ପ ବିଭୂତି ଆଦେଶ ॥

ପୂର୍ବେ ରୋମାଞ୍ଚ ମହାଯତି । ହରଙ୍କୁ ପୁଚ୍ଛନ୍ତି ଏ ବିଭୂତି ॥
ଶୁଣି ପ୍ରସନ୍ନ ଉମାକାନ୍ତ । କହିଲେ ଗୁପତବୃତ୍ତାନ୍ତ ॥
ତାହା ରୋମାଞ୍ଚ କରି ପାନ । ଶାସ୍ତ୍ର ସମ୍ବାଦ ହୋଇଲେ ମଗ୍ନ ॥
ପରମ ଯୋଗରେ ନିମଗ୍ନ । ଏକ ବ୍ରହ୍ମାକୁ ଦୃଢ଼େ ଭଜି ॥
କୋଟିଏ କଳ୍ପ ହୋଇଲା ଭୋଗ । ରୋମେକ ନ ଟଳଇ ଅଙ୍ଗ ॥
ସେ ମୁନି କହୁଛନ୍ତି ମୋତେ । ଶୁଣ ବଶିଷ୍ଠ କହୁ ତୋତେ ॥
କହିବା ରସ ମୂଳସାର । ଯହିଁ ତୁ କରିବୁ ଆହାର ॥
ତ୍ରିଗୁଣ ଏକଗୁଣେ ସମ । ହରକେସର ଭୃଙ୍ଗୀନାମ ॥
ବଟ ଓହଳ ତହିଁ ଭରି । ସୁଖାଇ ଏକଯେ ତା ଚୂର ॥
ଗୁଣିବ ଶୁକଳ କନାରେ । ଗର୍ଭକୁ ଭକ୍ଷିବ ପଣିରେ ॥
ନିଶି ପ୍ରଭାତେ ଯେବେ ଖାଉ । ଥିବକି କ୍ଷୁଧାତୃଷା ଆଉ ॥
ଆଉର କଥାଏ ଭୋ ଋଷି । ମନେ ପଡ଼ିଲା ମୋର ଆସି ॥
ହେଲ ଯେ ପଞ୍ଚର ଗଣ୍ଡାଇ । ବେଗୁନ ଅଗି ତହିଁ ଲାଇ ॥
ବାସଙ୍ଗ ଅଗି ତହିଁ ଭରି । ଚତୁର୍ଥେ ସମଯୁକ୍ତ କରି ॥
ତପନ ତେଜେ ଶୁଖାଇବ । ଋଷିପଣକୁ ତହିଁ ଦେବ ॥
ପଞ୍ଚ ପଦାର୍ଥ ଏକ କରି । ନିଶି ଅର୍ଦ୍ଧରେ ଏହା ଚୂରି ॥
ଯୁଆଣି ଗୋଟି ଗୁଡ଼ ମିଶା । ଛଡ଼ ପଦାର୍ଥ ଏକ ଦୃଶା ॥
ପ୍ରଭାତେ ଏକ ପାଦ ଧ୍ୟାଇ । ତିନ ଚମୁଟା ନିତ୍ୟେ ଖାଇ ॥
ସମ୍ପୂର୍ଣ୍ଣ ଛଡ଼ମାସଯାଏ । ମୁକୁତା ଦେହ ସୁନା ହୁଏ ॥
ନ ଥାଇ ରୋଗ ବ୍ୟାଧି କଷ୍ଟ । ପୂର୍ବେ ରୋମାଞ୍ଚ କହିଛନ୍ତି ॥
ସିଦ୍ଧଙ୍କ ବୁଟି ଏ ଅଟଇ । ଈଶାନେ ଅଛନ୍ତି ବତାଇ ॥
ଏ ଅଟେ ଗୁପତୁଁ ଗୁପତ । ଜାଣନ୍ତି ଆତ୍ମା ଜ୍ଞାନଭକ୍ତ ॥
ସେ ଆତ୍ମାଜ୍ଞାନେ ଯେ ସେବନ୍ତା । ଜାଣନ୍ତି ଆଗତ ବ୍ୟବସ୍ଥା ॥
ଶୁଣି ପ୍ରଚଣ୍ଡସୁତ ବାଣୀ । କହେ ବଶିଷ୍ଠ ତପୋଧନ ॥
ଭୋ ପକ୍ଷି କହ ମୋତେ ଫେଡ଼ି । ହେମ କେମନ୍ତେ ଯିବ ପୋଡ଼ି ॥
ଏ ଛଡ଼ ରୁତୁ କଟାଇବା । ବିନା ଆହାରେ କେହୁ ଥିବା ॥
ଇଚ୍ଛାରେ କରିବା ଭୋଜନ । ନାହିଁ ନଥିବ ଜଳ ପାନ ॥

ଆବର ଆତ୍ମା ଯୋଗ ବାଟ । ଫେଡ଼ି କହିବ ମୋ ନିକଟ ॥
ସେ ଆତ୍ମା ଯୋଗ କେମନ୍ତେ ସାଧି । ଏହା କହିବ ମୋତେ ଶୋଧି ॥
ମାତ୍ରା ଛଟେକି ମୋତେ କହ । ଯେମନ୍ତେ ରହିବ ଏ ଦେହ ॥
ଶୁଣି କହଇ ପକ୍ଷିଶ୍ରେଷ୍ଠ । ଏକଥା ଶୁଣ ହୋ ବଶିଷ୍ଠ ॥
ଅମନ ଶିଖୁ ହେତୁ ବାନ୍ଧୁ । ଚେତା ନୟନେ ରଖ ଗନ୍ଧୁ ॥
ଚନ୍ଦ୍ର ଅଙ୍ଗରେ ଷୋଳକଳା । ତହୁଁ କାଟିଣ ଚାରିକଳା ॥
ବାର କଳାରେ ସୂର୍ଯ୍ୟ ଉଦେ । ଚାରି କଳାକୁ ନିଶା ଖାଦେ ॥
ତପନ ଷୋଳକଳା ବନ୍ଧୁ । ବାର କଳାରେ ଚନ୍ଦ୍ର ରନ୍ଧୁ ॥
ଉଜାଣି ଧର ବାୟୁ ଟାଣି । କ୍ଷେପୁ ଆକାଶ ମାର୍ଗେ ପାଣି ॥
ବଙ୍କୁ ନାଳରେ ଠୁଳକର । ନାସିକା ଅଗ୍ରେ ଦୃଷ୍ଟି ଭର ॥
ବାମ ଜାନୁରେ ଦକ୍ଷପାଦ । ଦକ୍ଷିଣ ଜାନୁ ବାମ ପାଦ ॥
ଏମନ୍ତେ ପଦ୍ମାସନେ ଉଡ଼ି । ଦକ୍ଷିଣ ପଥେ ଯିବ ଚଢ଼ି ॥
ଯମ ହୋଇବ ତେବେ ନାଶ । କହିଲୁ ଶୁଣ ବ୍ରହ୍ମଶିଷ୍ୟ ॥
ଝରୁଛି ଶୂନ୍ୟ ଶିଖୁ ଝର । ଉଜାଣି ରସପାନ କର ॥
ଝର ଫେରାଇ ପାରୁ ଯେବେ । ପାଚିଲା କେଶ କଳା ତେବେ ॥
ଏମନ୍ତେ ଅଖଣ୍ଡ ସାଧନା । ସାଧି ପାରିଲେ ସାଧୁ ଜନା ॥
କହନ୍ତି ଅଚ୍ୟୁତ ନାମକୁ । ଭୁଷଣ୍ଡ କହେ ବଶିଷ୍ଠକୁ ॥
ଏଣେ ସୁହାଧୁ ଜନେ ରସ । କହେ ଅଚ୍ୟୁତ ହୀନ ଦାସ ॥

ଇତିଶ୍ରୀ ବ୍ରହ୍ମଶାଙ୍କୁଳବର୍ତ୍ତିନେ ଚନ୍ଦ୍ରକାନ୍ତ ହେତୁ
ଭୁଷଣ୍ଡବଶିଷ୍ଠସମ୍ବାଦେ ଶ୍ରୀଗୁରୁ ଶିଷ୍ୟ ଉପଦେଶ
ସପ୍ତମ କଳ୍ପ ଉକ୍ତଃ ॥



## ଅଷ୍ଟମ କଳପ

ଶ୍ରୀ ଭୁଷଣ୍ଡ ଉବାଚ

ଶୁଣ ହୋ ବେଦ ବ୍ରହ୍ମାସୁତ । ଆତ୍ମା ସାଧନ ବ୍ରହ୍ମତତ୍ତ୍ୱ ॥
ହଂସଳ ଭୂତେ ଏ ପବନ । ଖେଳଇ ଅରୂପ ଅବର୍ଣ୍ଣ ॥

ନାହିଁତା ଆକାର ବିକାର । ନିର୍ଗୁଣ ପରମ ଈଶ୍ୱର ॥
ଖେଳନ୍ତି ସର୍ବଭୂତେ ବ୍ୟାପି । ଅକ୍ଷୟ ପୂର୍ଣ୍ଣ ବ୍ରହ୍ମରୂପୀ ॥
ଏ ପଞ୍ଚଭୂତ ପୃଥ୍ୱୀ ଆପ । ତେଜ ବାୟୁବ୍ୟ ଆକାଶେକ ॥
ଏ ପୁଣି ପଞ୍ଚ ବର୍ଣ୍ଣ ଧରି । ପରମ ସ୍ୱରୂପେ ବିହରି ॥
ପଞ୍ଚ ପବନ ପଞ୍ଚ ନାଦ । ପ୍ରକାଶି ଛପ୍ନ କୋଟି ହ୍ରଦ ।
ତା ନାମ ପ୍ରାଣ ଅପାନ ହୋଇ । ସମାନ ଉଦାନ ବୋଲାଇ ॥
ବ୍ୟାନ ଏ ପଞ୍ଚବର୍ଣ୍ଣ ଧାଇ । ଖେଳନ୍ତି ଭୂତକୁ ଆବୋରି ॥
ପଞ୍ଚ ପବନ ପଞ୍ଚପ୍ରାଣ । କରନ୍ତି ନାସାରେ ଗମନ ॥
ଚନ୍ଦ୍ରାର୍କ ଏ ଦୁଇ ସାକ୍ଷରେ । ସେ ଜ୍ୟୋତି ଅଜ୍ୟୋତି ସଞ୍ଚରେ ॥
ଅଙ୍ଗୁଷ୍ଠ ମୂର୍ତ୍ତି ମନୁଷ । ପଞ୍ଚାଶ ଦଳ ମଧ୍ୟ ଗତ ॥
ସେ ବ୍ରହ୍ମ ସୂକ୍ଷ୍ମ ମୂର୍ତ୍ତି ଦେହ । ଅଟେ ଦହ ବନ୍ତ ସେ ଗୋସାଇଁ ॥
ଭ୍ରମନ୍ତି ଦିବସ ଯାମରେ । ସର୍ବ ସମ୍ପୂର୍ଣ୍ଣ ନିଷ୍କାମରେ ॥
ଦୃଢ଼ ଆସନେ ନାସା ଅଗ୍ରେ । ନିଶ୍ଚଳ ଧ୍ୟାନ ଏକପାଦେ ॥
ଚନ୍ଦ୍ର ମଣ୍ଡଳୁ ଜଳ ତୋଳି । ସୂର୍ଯ୍ୟ ମଣ୍ଡଳେ ଦିଅ ଢାଳି ॥
ନିଶ୍ରେଣୀ ଲଗିଛି ଶୂନ୍ୟରୁ । ମନ ପବନ ସଙ୍ଗେ ଚଳୁ ॥
ତ୍ରିକୂଟ ଦ୍ୱାରେ ପ୍ରବେଶିବ । ବାମ ଦକ୍ଷିଣ ଗୁଣ୍ଡି ଦେବ ॥
ତମ୍ଭରୁ ଭେଦ ଯିବ ଚଳି । ଢ଼ର ଭମ୍ବକୁ ଦୂର କରି ॥
ଢ଼ଗର ଶ୍ରୀ ଗୁରୁ ଉପଦେଶ । ଗୁହ୍ୟେ ହୋଇବ ପରବେଶ ॥
ଗିରୀଶ ସୁତ ଛନ୍ତି ତହିଁ । ଚତୁର୍ଥ ଦଳ ପେ ସେନଇ ॥
ଅପାନ ମୂଳାରେ ସ୍ଥିର ବାଇ । ଗୁହ୍ୟରେ ନିରତେ ଫେରଇ ॥
ସେ ସ୍ଥିର ପବନକୁ ଘେନି । ଊର୍ଦ୍ଧ୍ୱେ ଯେ ଇନ୍ଦ୍ରଚନ୍ଦ୍ର ପୁଣି ॥
ଛଡ଼ ପାଖୁଡ଼ା ଫୁଲ ତହିଁ । ଅଛନ୍ତି କାମ ଦେବ ବନ୍ଧୁ ॥
ବସିଛନ୍ତି ଛଡ଼ ଯେ ଦେବ । ବ୍ୟାନ ମୂଳରେ ତାଙ୍କୁ ଚିହ୍ନ ॥
ସେ ଛଡ଼ ସ୍ଥିର ଏକକରି । ବ୍ୟାନ ପବନ ହୃଦେ ଧରି ॥
ମିଳିବ ନାଭି କମଳରେ । ବ୍ରହ୍ମା ବିଜୟେ ସେ ଚକ୍ରରେ ॥
ଦଶ ପାଖୁଡ଼ା ଫୁଲ ଅଛି । ଦଶ ପବନ ତହିଁ ଗଛି ॥
ସମାନ ପବନର ମୂଳେ । ଦଶ ପାଖୁଡ଼ା ମଧ୍ୟ ଖେଳେ ॥

ସେ ଦଶ ଦଶ ଯେ ପବନ । ସମାନ ମୂଳେ ତା ଖଞ୍ଜିଣ ॥
ସୁମନେ ଊର୍ଦ୍ଧେ ଯିବ ଚଳି । ଯାଇ ପ୍ରବେଶ ହୃଦସ୍ଥଳୀ ॥
ସେ ଚକ୍ରେ ବସେ ନାରାୟଣ । ବହାଇ ଦ୍ୱାଦଶ ପବନ ॥
ଦ୍ୱାଦଶ ପାଖୁଡ଼ା ନିର୍ମିତ । ପ୍ରାଣ ପବନ ତହିଁ ସ୍ଥିତ ॥
ଚଉଦ ଭୁବନ ସମ୍ପତ୍ତି । ଯେନ ବସନ୍ତେ ଲକ୍ଷ୍ମୀପତି ॥
ସେ ଦଶ ଦଶ ଦ୍ୱାଦଶରେ । ମିଶାଇ ପ୍ରାଣ ପବନରେ ॥
ହୃଦେ ସୁମର ନାରାୟଣ । ସେଠାରୁ ଚଳିବ ଊର୍ଦ୍ଧେଣ ॥
ମିଳିବ କଣ୍ଠ ଚକ୍ରେ ଯାଇ । ସେ ଚକ୍ରେ ଛନ୍ତି ଉମାସାଇଁ ॥
ଗିରି ଫିଟିଣ ତନ ଧାର । ପଡ଼େ ଶଙ୍କର ମସ୍ତକର ॥
ସେ ଅଟେ ମକରନ୍ଦ ରସ । ହର କରନ୍ତି ନିତ୍ୟ ଗ୍ରାସ ॥
ଷୋଳ ପାଖୁଡ଼ା ଫୁଲ ତହିଁ । ଉଦାନ ମୂଳେ ଷୋଳବଇ ॥
ସେ ଦଶ ଦଶ ଦ୍ୱାଦଶରେ । ଷୋଳ ପବନ ମିଶୁଥିରେ ॥
ସମସ୍ତ ଏକଯ ମିଳାଇ । ମହାଦେବଙ୍କୁ ହୃଦେ ଧ୍ୟାଇ ॥
ଉଦାନ ମୂଳେ ତା ଖଞ୍ଜିଣ । ଊର୍ଦ୍ଧ୍ୱକୁ ଚାଳିବ ପବନ ॥
ଗମିବ ସବ୍ରହ୍ମତାଧାରେ । ଗିରି ଅରଣ୍ୟ ବନ ଘୋରେ ॥
ଦୁର୍ଗମ ପଥ ସେହୁ ଜାଣ । ଚଳୁ ଏ ସୁମନ ପବନ ॥
ପରମ ପୁରୁଷକୁ ଧାଇ । ଗମିବ ମହାକଷ୍ଟ ପାଇ ॥
ମିଳିବ ଲଲାଟ ଚକ୍ରରେ । ଶ୍ରୀ ନିରାକାରଙ୍କ ଛାମୁରେ ॥
ଦର୍ଶନ କରି ଆଦିବ୍ରହ୍ମ । ବିନାଶି ମାୟା ମୋହ ଭ୍ରମ ॥
ବେନ ପାଖୁଡ଼ା ଫୁଲ ଅଛି । ଏକଇ ପବନ ବହୁଛି ॥
ଆରେକ ପାଖୁଡ଼ା ନଦାନ୍ତ । ଊର୍ଦ୍ଧ୍ୱକୁ ଅଛି ପୁଣ ସାନ୍ତ ॥
ସେ ସାତ ପୁଣ ମଧ୍ୟ କଥା । ଶୁଣ ବଶିଷ୍ଠ ପୁଣ୍ୟ ବନ୍ତା ॥
ସେ ବିଂଶ ଦ୍ୱାଦଶ ଷୋଳେଣ । ଏକକୁ ମିଶାଇ ଯତନ୍ନ ॥
ଏମନ୍ତେ ଅଣଚାଷ ବାଇ । ପଞ୍ଚ ପବନ ସଙ୍ଗେ ନେଇ ॥
ଏ ସବୁ ହୋଇଲେ ଏକଯ । ମୁଦା ପଡ଼ିବ ବାମ ପଥ ॥
ଦକ୍ଷିଣେ ଏକାଙ୍ଗ ଭଜନ । ଏହାକୁ କହି ବ୍ରହ୍ମଜ୍ଞାନ ॥
ଏମନ୍ତେ ସ୍ଥିରିଦୃଷ୍ଟି ଘଟେ । ଆକାଶେ ଗମିବ ସୁଅଙ୍ଗେ ॥

ମନୁ ହ୍ର ପୁର ଯିବ ଜାଣି । କାଉଁଶ୍ଚ ମଣ୍ଡଳ ସେ ପୁଣି ॥
ଦେବ ନାଶନ ବାଟ ଅଛୁ । ସେ ବାଟେ ସର୍ପେକ ରହିଛୁ ॥
ଅବାଇ ପଥ ସେ ଅଟଇ । ପରମ ଏକା ଆସେ ବହି ॥
ମନ ପବନ ଲୀନ କର । ହେତୁରେ ଉର୍ଦ୍ଧ୍ୱପଥ ହେଉ ॥
ଯେ ହାଟ ଚତୁର୍ବର୍ଗ ପେଣ୍ଡୁ । ଘଂ ଘଂ ଶବଦରେ ପ୍ରକଟ ॥
ସେ ପଥ ପାର ହୋଇ ଗଲେ । ବୈକୁଣ୍ଠ ଦଶଇ ନାଟଘଲେ ॥
ପୂରବ ମାନସରୋବର । ପରମ ହଂସର ବିହାର ॥
କନକ ସ୍ଫଟିକ ସ୍ୱରୂପ । ଖେଳେ ପରମ ଅବିକଳ୍ପ ॥
ସେ ସରୋବର ଉର୍ଦ୍ଧ୍ୱେ ଦିଶେ । ସହସ୍ର କର୍ଣ୍ଣିକା ପ୍ରକାଶେ ॥
ଫଣି ସ୍ୱରୂପ ପରେ ମଣି । ସେ ମହାବ୍ରହ୍ମ ଶିରୋମଣି ॥
ତାହାଙ୍କ ବର୍ଣ୍ଣ ଚହ୍ନ ନାହିଁ । ଅଜନ୍ମ ପୁରୁଷ ଗୋସାଇଁ ॥
ଆତ୍ମା ଯୋଗ ସାଧନା ବେଳେ । ତାଙ୍କୁ ଦେଖିବ ଚର୍ମଡୋଳେ ॥
ଉଲଟ ଉଜାଣି ବହିଲେ । ଜଳ ସମ୍ପୂର୍ଣ୍ଣ ହଂସ ଖେଳେ ॥
ଅଭୟ ପାଦକୁ ଅନାଇଁ । କୋଟି କଳ୍ପାନ୍ତ ଜୀବ ବହି ॥
ତେବେ ଲଭିବ ଆତ୍ମା ସୁଖ । ନଥିବ ଭବ ଭୟ ଦୁଃଖ ॥
ଏଜ୍ଞାନ ପାର୍ବତୀ ଆଗରେ । ଶିବ କହିଲେ ଏକାମ୍ର ବନେ ॥
ଶୁଣ ହେ ବ୍ରହ୍ମାଙ୍କ ନନ୍ଦନ । ଏ ଯେ ଅଟଇ ବ୍ରହ୍ମଜ୍ଞାନ ॥
ଏହା ନଜାଣେ ଯେଉଁ ଯୋଗୀ । ସେ କୋଟିଏ ଆତ୍ମାଜ୍ଞାନ ଭୋଗୀ ॥
ନିଷ୍କାମ ଅକିଞ୍ଚନ ଭାବ । ତିନ ତ୍ରୈଲୋକ୍ୟେ ଏ ଦୁର୍ଲ୍ଲଭ ॥
ଯମକୁ ପାଖରେ ବସାଇ । କହନ୍ତି ଅଚ୍ୟୁତ ବୁଝାଇ ॥
ସୁଜନେ ଗୁପତ କରିବ । ପ୍ରକାଶ କଲେ ଦୋଷ ହେବ ॥
କହେ ଅଚ୍ୟୁତାନନ୍ଦ ଦାସ । ଏ ସାର ବ୍ରହ୍ମ ଉପଦେଶ ॥

ଇତି ଶ୍ରୀ ବ୍ରହ୍ମଶାଙ୍କୁଳିବର୍ଣ୍ଣନେ ଚନ୍ଦ୍ରକାନ୍ତହେତୁଭୂଷଣ ବଶିଷ୍ଠ
ସମ୍ବାଦେ ଶ୍ରୀ ଗୁରୁଶିଷ୍ୟ ଉପଦେଶ
ଅଷ୍ଟମ କଳ୍ପ ଉକ୍ତଃ ॥



# ନବମ କଳପ ।

## ଶ୍ରୀ ଭୂଷଣ୍ଡ ଉବାଚ ॥

ଶୁଣ ସୁମନେ ବ୍ରହ୍ମଶିଷ୍ୟ । ଏ ଆତ୍ମା ନିର୍ଗୁଣ ପୁରୁଷ ॥
ଏହାର ପାଦ ପାଣି ନାହିଁ । ପବନ ରୂପେ ଯାଏ ବହି ॥
ଏ ଭୂତେ ଶାଙ୍କୋଳି ସ୍ୱରୂପେ । ଛନ୍ଦଛି ଛପ୍ନ କୋଟି କୂପେ ॥
ଏହାତୁ ଚହ୍ନିପାରୁ ଯେବେ । ହେତୁ ରହିବ ଯୁଗେ ଯୁଗେ ॥
ଚନ୍ଦ୍ର ଫେରଇ ସୂର୍ଯ୍ୟ ଘର । ବାମଙ୍ଗ ଦାଢ଼ ପ୍ରୀଠ ମଣ୍ଡ ॥
ବିଷମ ଅର୍ଗଳ ଫିଟିବ । ପିତ୍ତଳଅଙ୍ଗ ସୁନା ହେବ ॥
ଏ ତତ୍ତ୍ୱ ଜାଣନ୍ତି ଯେ ଯୋଗୀ । ଦୀକ୍ଷା ଦେନବ ତାଙ୍କୁ ମାଗି ॥
ବିନା ସଦ୍‌ଗୁରୁ ନ କହିଲେ । କେ ଚହ୍ନି ପାରିବ ସହଳେ ॥
ଶୁଣ ହେ ପ୍ରଜାପତି ବାଳ । ଏହି ପବନ ଅଟେ ମୂଳ ॥
ଏହାକୁ ଚହ୍ନି ଯେ ନ ପାର । ସେ କୋହେ ଯୋଗୀ ଦଗାମୂର୍ଖ
ଏହି ଥିବାରୁ ସର୍ବ ଯକ୍ଷ । ଏ ଥିଲେ ସକଳ ପୌରୁଷ ॥
ଏହା ଗୁଡ଼ନ୍ତେ ଦେହ ଯାଇ । କୂର୍ମିଖଣ୍ଡ ଟି ବଢ଼ଥାଇ ॥
ଦେଖ ଏ ଜଳ ସ୍ଥଳଶୂନ । ଏ ମର୍ତ୍ତ୍ୟ ସ୍ୱର୍ଗାଦି ପାତାଳ ॥
ଭୂଲୋକ ଧ୍ରୁବଲୋକ ଯାଏ । ସ୍ୱଲୋକ ମହଲୋକ ବହେ ॥
ଶୂନ୍ୟାଦି ଶୂନ୍ୟେ ଅଛି ବ୍ୟାପି । ସିଦ୍ଧ ପୁରୁଷ ସେ ଅରୂପୀ ॥
ସେ ସିଦ୍ଧ ତାଙ୍କୁ ଛନ୍ତି ଧ୍ୟାଇ । ଅନ୍ୟ ଜାଣିବ ଏହା କାହିଁ ॥
ସକଳ ଭୂତମଧ୍ୟେ ସାର । ଏ ଯେ ମାନବ ଅବତାର ॥
ଏ ଭୂତେ ପ୍ରସନ୍ନ ମୁରାରି । ପାଇଲେ ଏକପାଦ ହେଉରି ॥
ଶିଙ୍କୁଳି ଛନ୍ଦେ ତାର ଖବ । କରି ପାରିବ ଯେବେ ଠାବ ॥
ମୁଁ ତୋତେ କହୁଅଛି ଫେରି । ପାରଲେ ପ୍ରିତ କର ଯାଇ ॥
ଏମନ୍ତ ଭୂଷଣ୍ଡ ବଚନ । ଶୁଣି ବଶିଷ୍ଠ ତୋଷମନ ॥
ବୋଲନ୍ତି ଶୁଣ ହେ ମହନ୍ତ । କହ ଗୁପତ ସାରସ୍ୱତ ॥
ଏ ଦେହଭୂତରେ ପବନ । ଖେଳଇ ନିଶି ଦିବସେଣ ॥
ମହାଶୂନ୍ୟକୁ ଯିବାପାଇଁ । କେଉଁ ଭୂତରେ ପଥ ଧାଇ ॥

କପଟ ନକରିବ ମୋତେ । ଫେଡ଼ି କହିବ ମୋ ଅଗ୍ରତେ ॥
ଏ ଆତ୍ମା କେଉଁଠାରୁ ଜାତ । କହ ପ୍ରଚଣ୍ଡ ସୁତ କାକ ॥
ଶୁଣି ସଟନ୍ତ୍ରାଷ ଚିତ୍ତ ହେଉ । ତୋ ଯଶ ଯୁଗେ ଯୁଗେ ଥାଉ ॥

## ଶ୍ରୀ ଭୂଷଣ୍ଡ ଉବାଚ ।

ଶୁଣ ହେ ବଶିଷ୍ଠ ସେ ଭାବ । କହିବା ଯିବ ପ୍ରୀତି ଲଭ ॥
ଏ ପଞ୍ଚଭୂତ ମଧ୍ୟ ବ୍ୟାପୀ । ଖେଳନ୍ତି ପରମ ସ୍ୱରୂପୀ ॥
ବିନା ଉଜାଣି ନ ଚଳାଇ । କେ ଅଛି ହିଡ଼ି ଅଙ୍ଗ ବହି ॥
ଉଲଟ ଉଜାଣି ଚଳିଲେ । ପୁରିତ ମାନ ସରୋବରେ ॥
ପରମ ଅଙ୍ଗ ଜୀବ ମିଶେ । ଏ ଆତ୍ମା ନିର୍ମଳ ପ୍ରକାଶେ ॥
ନିଶ୍ଚେ ଭେଟିବ ଆଦିକନ୍ଦ । ନାହିଁ ଟଳିବ ନିଜ ବନ୍ଧ ॥
ସେ ପୂର୍ଣ୍ଣବ୍ରହ୍ମ ଶୂନ୍ୟବାସୀ । ଛାମୁରେ ଶରଣ ନବେଶି ॥
ଶ୍ରୀ ମୁଖ ଗୃହେଁ ଦିବ ଦାନ । ଏ ଯଶ ଯୁଗେ ଯୁଗେ ଧନ୍ୟ ॥
କହିବା ଶୁଣ ସେ ସଙ୍କେତ । ଶୂନ୍ୟକୁ ଯିବାପାଇଁ ପଥ ॥
ଦିବସ ଆଦି ମଧ୍ୟାହ୍ନରେ । ପ୍ରାତଃ ସମୟ ସାୟଂକାଳେ ॥
ଅର୍ଦ୍ଧନିଶିରେ ପୁଣି ଆଦ୍ୟ । ନିଷ୍ଟଳେ ଆକାଶକୁ ଭେଦ ॥
ଏ ସ୍ୱରବେଳର ବୃତ୍ତାନ୍ତ । ଶୁଣ ବଶିଷ୍ଠ ତପୋବନ୍ତ ॥
ଏ ପଞ୍ଚଭୂତରେ ପବନ । ବହଇ ନିଶି ଦିବସେଣ ॥
ଚନ୍ଦ୍ର ସୂର୍ଯ୍ୟରେ ଦୁଇ ଦୁଇ । ଦଣ୍ଡ ବିଶ୍ରାମ କରେ ଦେହି ॥
ପ୍ରଥମ ଭୂତ ହେଲେ ଷେଗ । ଆନ ଭୂତରେ ହୁଏ ଯୋଗ ॥
ପୃଥ୍ୱୀରେ କଟକଇ ବାତ । ଅଚଳେ ରହେ ସ୍ଥିରମତ ॥
ଜଳରେ ଲହଡ଼ି ମାରଇ । ହିତରେ ହଶିତ ନୁହଇ ॥
ଅଗ୍ନିରେ ଦେହ କମ୍ପ କରେ । ଶରୀର ଦମ୍ଭ କେ ବା ଧରେ ॥
ବାୟୁବ୍ୟୋତ ନ ଚଳଇ । ଉର୍ଦ୍ଧ୍ୱରୁ ଅର୍ଦ୍ଧକୁ କ୍ଷେପଇ ॥
ଆକାଶେ ଏ ମନ ପବନ । ଶୂନ୍ୟକୁ କରନ୍ତି ଗମନ ॥
ଯେତେ ସ୍ଥଳବ ତେତେ ଚଳେ । ଅଭମ୍ଭ ପାଦ ଭକ୍ତିବଳେ ॥
ଆକାଶ ତତ୍ତ୍ୱେ ହେଲୁ ସ୍ଥିର । ଶୁଣ ହେ ବ୍ରହ୍ମାଙ୍କ କୁମର ॥

ସିଦ୍ଧେ ଅଛନ୍ତି ଧ୍ୟାନଧରି । ଏ ପଞ୍ଚଭୂତକୁ ବିଗ୍ରହି ॥
ଅନ୍ୟ ବେଳରେ ଯେ ଭାବନା । ଠେକ ଠାକନ୍ତା ମତ୍ତ ହିନା ॥
ହେତୁରେ ନମକ୍କିଣ ଥିବ । ସମୟେ ଜାଗିଣ ବସିବ ॥
ଏ ମହା ଗୁପତ ବିଗ୍ରହ । ଫେଡ଼ି କହିଲୁ ମୁନିବର ॥
ଗୁରୁ ସେବିଲେ ଏହା ଜାଣି । ଗୁରୁବଚନ ମୁକ୍ତ ମଣି ॥
ଉତ୍ତମ ଗୁରୁପାଦେ ସେବା । ଗୁରୁ ବଚନେ ନିସ୍ତରିବା ॥
କହେ ଅଚ୍ୟୁତ ଦୃଢଜ୍ଞାମା । ଗୁରୁ ସେବନ୍ତା ନରେ ଧନ୍ୟ ॥

ଇତି ଶ୍ରୀ ବ୍ରହ୍ମଶାଙ୍କୁଳିବର୍ଣ୍ଣନେ ଚନ୍ଦ୍ରକାନ୍ତହେତୁଭୂଷଣ୍ଡବଶିଷ୍ଠ
ଧର୍ମାଦେ ଶ୍ରୀ ଗୁରୁଶିଷ୍ୟ ଉପଦେଶ
ନବମ କଳପ ଉକ୍ତଃ ।



## ଦଶମ କଳପ ।

ଶ୍ରୀ ଭୂଷଣ୍ଡ ଉବାଚ ।

କହନ୍ତି ପ୍ରଚଣ୍ଡ ନନ୍ଦନ । ଶୁଣ ବଶିଷ୍ଠ ତପୋଧନ ॥
ଏ ଆତ୍ମା ସର୍ବଭୂତେ ଅଚ୍ଛି । ପ୍ରଥମେ ସ୍ଥୂଳାକାର ଗଢ ॥
ଦ୍ୱିତୀୟେ ଫେନ ପ୍ରକାଶଇ । ତୃତୀୟେ ଆରକ୍ତ ଦଶଇ ॥
ଲୋହିତ କୁଙ୍କୁମ ଶ୍ୟାମଳ । ରୂପେ ବିସ୍ତାର କାମ୍ୟାସ୍ଥଳ ॥
ମଧ୍ୟମ ମୂଳ ନାଭିଦେଶ । ତହୁଁ ସଞ୍ଚିତ ଅନ୍ନକୋଷ ॥
ଅର୍ଦ୍ଧ ଊର୍ଦ୍ଧ୍ୱକୁ ଯାଏ ବଢ଼ି । ଏକ ବ୍ରହ୍ମଟି ସର୍ବଗଢ଼ି ॥
ସମସ୍ତ ନର୍ଭକର ପୁଣି । ଶୂନ୍ୟେ ବିଶ୍ରାମ ମୁକ୍ତମଣି ॥
ଜୀବେ ପରମରୂପେ ଆପେ । ବିହରେ ଛପନକୋଟି ରୂପେ ॥
ଜନରୁଧିରେ ସୃଜି ଦେହ । ଅଜନ୍ମପୁରୁଷ ସେ ସ୍ୱୟମ୍ଭୁ ॥
ପିତା ମାତାଙ୍କୁ ଯୁକ୍ତେ ମୋହି । ଆତ୍ମାରୁ ଆତ୍ମା ପ୍ରକାଶଇ ॥
ଶୁଣ ହେ ବ୍ରହ୍ମାଙ୍କ କୁମର । ତୋମନେ ତୁ ବିଗ୍ରହ କର ॥
ବିନ୍ଦୁଟି ସାଗରଜଳ । ତୁହିଁ ପରମ ନିଜସ୍ଥଳ ॥

ଭ୍ରମଇ ଚନ୍ଦ୍ରସୂର୍ଯ୍ୟ ଦ୍ୱାରେ । ପୁଣି ପାଲଟି ରହେ ଘରେ ॥
ସର୍ଜନା ଇଚ୍ଛା ହେଲେ ତାର । ସେ ବିନ୍ଦୁ ଯେନ ସଙ୍ଗତର ॥
ମେରୁ ଦୁଆରେ ପଡ଼େ ଗଳି । ମାତା ପଦ୍ମରେ ଯାଇଁ ମିଳି ॥
ଏରୂପେ ଆତଯାତ କରେ । ଏକରୁ ଆରେକ ହୁଏରେ ॥
ଏମନ୍ତେ ଆତ୍ମାର ସଞ୍ଚାର । ସର୍ଜନା ଚତୁର୍ଦ୍ଦଶ ପୁର ॥
ସିଦ୍ଧେ ଚଉତିଶ ଛନ୍ଦ ସେବି । ଅଖଣ୍ଡ ବ୍ରହ୍ମ ଭୂତେ ଭାବି ॥
ଛ ଚକ୍ର ଭେଦି ଉଦେ ହୋନ୍ତି । ପଞ୍ଚଭୂତରେ ନିଜସ୍ଥିତି ॥
ବିନ୍ଦୁ ସଂଯୋଗେ ଜୀବ ଜାତ । ପରମ ବ୍ରହ୍ମ ସୁସଂଗୀତ ॥
ସକଳ ସୂକ୍ଷ୍ମ ମେରୁ ଦିଶେ । ବିଶ୍ରାମି ପଞ୍ଚଭୂତ ସାକ୍ଷେ ୬୧ ॥
ଗର୍ଭେ ଜୀବକୁ ଆବୋରଣ । ଥାନ୍ତି ଅନାଦି ନାରାୟଣ ॥
ଅଙ୍ଗରୁ ଅଙ୍ଗ କରି ଜାତ । ସେ ଅଟନ୍ତି ଅଯୋନିସମ୍ଭୂତ ॥
ପ୍ରଣବଦ୍ୱାରେ ପିଣ୍ଡ ହୋନ୍ତେ । ସେ ପୁଣି ଗମି ଶୂନ୍ୟପଥେ ॥
ମାତା ନୟନେ ବିଶ୍ରାମଇ । ଯେମନ୍ତେ ଯାଙ୍କ ମତି ବହି ॥
ଯେତେକ ବିକଳର ପ୍ରାୟେ । ଯାଇ ପ୍ରବେଶ ହୋନ୍ତି ଦେହେ ॥
ଜୀବ ସେ ପିଣ୍ଡରେ ଇଷିତ । ଯେଙ୍କାରେ ମିଳଇ ମଧ୍ୟଗତ ॥
ଚେତା ଚୈତନ୍ୟ ହେତୁ ମୂଳ । ପରମ ଅଙ୍ଗୁ ଉପୁଜିଲେ ॥
ଶ୍ରୋତାପର ଚଆଇଁ ରବିଲ୍ଲ । ଉଦର କଥା ପାଶୋରିଲା ॥
ହେଲେ ମୋହିତ ଘାରିବ ଛନ୍ଦି । ଏଣୁ ସେ ଆତଯାତ ଜନ୍ମ ॥
ଅନନ୍ତ ମାୟାମୋହେ ପଡ଼ି । ପୂର୍ବ ବିନୟ ପଥ ଛଡ଼ି ॥
ଶୁଣ ହୋ ବଶିଷ୍ଠ ବଚନ । ଯେ ହେତୁମନ୍ତ ସଇଲୋକ୍ୟ ॥
ସେ ପୁଣି ହେତୁରେ ଭ୍ରମନ୍ତି । ଯେଣୁ ସେ ଆଗତ ଜାଣନ୍ତି ॥
ପରମ ଅଟଙ୍କ ନିକ୍ଷି ଗର୍ଭେ । ସେ ତାଙ୍କୁ ଘେନିଥାଇ ସଙ୍ଗେ ॥
ସୁମନ ଓଡାର କଉପୁମା । ପିଣ୍ଡି ମାତାର ଗର୍ଭ ଜନ୍ମି ॥
ପରମ ପ୍ରବେଶିଲେ ତାହେ । ଶ୍ରୋତାରେ ପୁଣି ଚେତ ସେବେ ॥
ହେତୁ ଆଗତ ଜ୍ଞାନବଳେ । ତ୍ରିଗୁଣ ଛେଦନ କୁଠାରେ ॥
ଜୀବ ପରମ ଏକ ଦେହ । ପ୍ରକୃତି ସଂଯୋଗରୁ ମୋହ ॥
ଏ ଆତ୍ମ ଯାତ କୃତ ବିଧି । କହିଲୁ ବଶିଷ୍ଠ ହୋ ଶୋଧି ॥

ଅଖଣ୍ଡବ୍ରହ୍ମେ ପ୍ରୀତି କର । ହେତୁକୁ ଯେତନେ ବହର ॥
ଅଲେଖ ଅଭାଇ ମଣ୍ଡଳେ । ଭେଟାଅ ମନ ଯନ୍ତ୍ରଣାଳେ ॥
ତ୍ରିଗୁଣବନ୍ଧ ହେବ କାଟ । ନୋହିବ ଜନ୍ମ ମୃତ୍ୟୁ ଭେଟ ॥
ଫେଡ଼ି କହିଲୁ ମାୟା ନାହିଁ । କହେ ଅଚ୍ୟୁତାନନ୍ଦ ବାଇ ॥
ସହଜ ଆତ୍ମାର ସାଧନା । ଗମ ଏ ଭାବେ ସାଧ କନା ? ॥
ଏ ବ୍ରହ୍ମ ମୁଦ୍ରା ପରଛନ୍ଦ । ଗୁପତ କହିଲେ ଗେ ବନ୍ଦ ॥
ପୂର୍ବେ ଭୂଷଣ୍ଡ ମହାତମା । ବଶିଷ୍ଠେ ପ୍ରକାଶି ମହିମା ॥
ବ୍ରହ୍ମକୁ ଶାଙ୍କୁଳି ଛନ୍ଦଣି । ଚନ୍ଦ୍ରାର୍କ କାନ୍ତ କ ଉଜାଣି ॥
ଏ ଭାବେ ଭବବନ୍ଧ ତୁଟଇ । ଅନ୍ତେ ଅଭୟ ପାଦେ ଖଟଇ ॥
ସେ ବ୍ରହ୍ମଜ୍ଞାନ କର ଆଶ । ଭଣେ ଅଚ୍ୟୁତାନନ୍ଦ ଦାସ ॥

ଇତି ଶ୍ରୀ ବ୍ରହ୍ମଶାଙ୍କୁଳିବର୍ତ୍ତିନେ ଚନ୍ଦ୍ରକାନ୍ତ ହେତୁ
ଭୂଷଣ୍ଡ ବଶିଷ୍ଠସମ୍ବାଦେ ଶ୍ରୀଗୁରୁଶିଷ୍ୟ ଉପଦେଶେ
ଦଶମ କଳ୍ପ ଉକ୍ତଃ ॥



# ଏକାଦଶ କଳ୍ପ ।

ଶ୍ରୀ ବଶିଷ୍ଠ ଉବାଚ ।

କହନ୍ତି ପଦ୍ମଯୋନି ବଳା । ଅନାମ ପ୍ରେମେ ହୋଇ ଭୋଳା ॥
ଭୂଷଣ୍ଡ କରଣ ବିନତି । ନିଗମ ତତ୍ତ୍ୱ ପଚାରନ୍ତି ॥
ବୋଲନ୍ତି ଶୁଣ ସିଦ୍ଧଅଙ୍ଗୀ । ତୁମ୍ଭେ ଯା କହିଲ ଥାଙ୍ଗୀ ॥
ସେ ପରଂବ୍ରହ୍ମ ନିର୍ବିକାର । ବିହରେ ଛପନକୋଟିର ॥
ତ୍ରିଭଙ୍ଗୀ ପ୍ରକଟ ବିଳାସ । କହ ନିଗମ ଉପଦେଶ ॥
ସେ ବ୍ରହ୍ମ ଆଦି ଅନ୍ତଭାବ । କହ କି ସୂକ୍ଷ୍ମେ ହେବ ଠାବ ॥
ତୁମ୍ଭେ ତ ପରମ ମହନ୍ତ । ମୁଁ ଜନ୍ମେ ଜନ୍ମେ ତୋର ଭୃତ୍ୟ ।
ଏମନ୍ତ କହି ମୁନିବର । ନମିଲେ ଭୂଷଣ୍ଡ ପୟର ॥
ଉଠ ଖେଚୃଷି ବୋଲି ଭାଷି । କହେ ପ୍ରଚଣ୍ଡ ଦାରିଶିଷି ॥

## ଶ୍ରୀ ଭୂଷଣ୍ଡ ଉବାଚ ।

ଶୁଣ ହେ ବେଦପଥ ସୁତ । ଏ ଆତ୍ମା ସର୍ବଶକ୍ତିଯୁକ୍ତ ॥
ସବୁରେ ସମାନ ବେଭାରେ । ନିର୍ଗୁଣ ନିତ୍ୟ ନିର୍ବିକାରେ ॥
ଅଦଣ୍ଡି ଅନନ୍ତ ଅରୂପ । ଅବନୀମଣ୍ଡଳେ ତା ଧାପ ॥
ଗଳପଡ଼ଇ ନବଦ୍ୱାରେ । ଗାୟତ୍ରୀ ସାବିତ୍ରୀ ବିଧିରେ ॥
ତାଳୁକା ଦ୍ୱାର ଅଛୁ ମୁଦା । କରିପାରିବ ଯେବେ ସିଧା ॥
ସେ ଦ୍ୱାରେ ମନ ହେତୁ ବୁଦ୍ଧି । ଏ ନବଦ୍ୱାରୁ ନେଇ ଶୋଧି ॥
ଏକତ୍ର କଲେ ଦିବା ନିଶି । ଫିଟିବ କାଳମାୟା ଫାଶୀ ॥
ନିଶ୍ଚିନ୍ତ ହୋଇବ ଏ ଦେହ । ନାହିଁ ଲାଗିବ ମାୟା ମୋହ ॥
ତ୍ରିଗୁଣ ଏକଗୁଣେ ସ୍ଥାପି । ଅଣ ଅକ୍ଷର ସୃଜେ ଜପି ॥
ମହା ମାୟାର ବିଘ୍ନ ଯେତେ । ଆଳସ୍ୟ ବିଳାସ ସଂଯୁକ୍ତେ ॥
କୂଟ କପଟ ଆଦିଛନ୍ଦ । ଅପରେ ଦେବଙ୍କ ପ୍ରମାଦ ॥
ଏଜ୍ଞାନେ ସର୍ବ ହେବ ଦୂର । ନାହିଁ ପଶିବ ଘରେ ଚୋର ॥
ନିଶ୍ଚିନ୍ତ ହୋଇବୁ ହେ ଋଷି । ଯେବେ ତୁ ପାରୁ ଏଥେ ପଶି ॥
ଚନ୍ଦ୍ରକୁ ଅର୍କ ଗୃହେ ଭର । ଚଞ୍ଚଳ ଚିତ୍ତ ସ୍ଥିର କର ॥
ହେତୁର ମୂଳେ ମନ କ୍ଷେପ । ଦିବା ରଜନୀ ବସି ଜପ ॥
ଆଟକାଣି ଟେକ ତାକୁ ଗୃଳ । ଚୈତନ୍ୟ ମୁଦ୍ରା ପାଡ଼ି ଖେଳ ॥
ବହ୍ନା ହଂସଅ ନିରତେ । ଚଳୁ ଅମନ ଶିଖ ପଥେ ॥
ବଙ୍କୁ ନାଳରେ ଦୃଷ୍ଟି ଦେଇ । ଜଗତେ ଭଜ ତୁ ଚେତାଇ ॥
ଏଜ୍ଞାନ ଚନ୍ଦ୍ରକାନ୍ତ ହେଲୁ । ପରିଲେ ସାଧ ଆତ୍ମା ତତ୍ତୁ ॥
ହେତୁକୁ ବାରିଥାଅ ଖଟି । ଯିବ ତ୍ରିଗୁଣ ସୂତ୍ର କଟି ॥
ମୁଁ ତେତେ କହୁଛି ବଶିଷ୍ଠ । ସବୁହିଁ ଆତ୍ମଜ୍ଞାନ ଶ୍ରେଷ୍ଠ ॥
ସେ ଆଦି ଅନାଦି ଶ୍ରୀହରି । ଛନ୍ତି ସକଳ ଘଟେ ପୂରି ॥
ଗୁମ୍ଫା ଆକୃତି ହୋଇ ଦେହ । ଦୋଡ଼ାଇ ଅଛୁ ସେ ଅଦେହ ॥
ଜ୍ଞାନୀକୁ ଭୁଲାଉଛୁ ନିତି । ଅଜ୍ଞାନୀ ଜନ ନ ଜାଣନ୍ତି ॥
ଯେ ରଜ ଗୁଣେ ସୃଷ୍ଟି ଯୁତ । କୁମତି କୃପଣ କୁତ୍ସିତ ॥
ତମ ରଜସ ପ୍ରାଣୀ କର । ଏ ଧର୍ମ ବୁଝଇ ଆତୁର ॥

ସାରୁକ୍ୟମସ୍ତ ଏ ବିଭୂତି । ଶୁଣ ହୋ ମହାତ୍ମା ସୁମତି ॥
ଅଷ୍ଟାଙ୍ଗ ନତି ଲମ୍ବକର । ଅଜପା ଅଚହ୍ନାକୁ ଧର ॥
ଅନନ୍ତ ମୂର୍ତ୍ତି ଅନ୍ତେ ବଜେ । ସେ ବ୍ରହ୍ମ ସନାତନ ଗଜେ ॥
ଦେଖି ବିଭୂତି କାମ୍ୟରୂପ । ଏ ସେ ପରମ ସିଦ୍ଧକଳ୍ପ ॥
ଅକ୍ଷୟ ତ୍ରିଭୁବନେ ବ୍ୟାପୀ । ବନ୍ଦନ୍ତି ଯେ ବ୍ରହ୍ମ ସ୍ୱରୂପୀ ॥
ନ ପୁଣ ବୃଷ୍ଟି ଆଗେ ଖେଳେ । ଦିବ୍ୟ କାଞ୍ଚନ ମୂର୍ତ୍ତି ଝଳେ ॥
ସକଳ ଭୂତେ ମହେଶ୍ୱର । ମହିମା ଅପାରୁଁ ଅପାର ॥
ଫେଡ଼ି କହିଲୁ ମାସ୍ତ ନାହିଁ । ଭୋ ମହାମୁନି ଭଜ ଯାଇ ॥
ବାରକୁ ବାର ଚଉବଂଶ । ତା'ର ପରମ ହଂସେ ମିଶ ॥
ତାର ମିଶାଇ ବାରମଳ । ଶିବ ଏ ରସେ ନିତ୍ୟ ଖେଳ ॥
ନାରଦ ମୁନି ବ୍ରହ୍ମଜ୍ଞାନୀ । ଅନନ୍ତ ଏ ସ୍ତବକୁ ଘେନ ॥
ଏ ସୂକ୍ଷ୍ମ ଯୋଗ ବ୍ରହ୍ମଜ୍ଞାନ । ବଶିଷ୍ଠ ହୃଦପଦ୍ମେ ଘେନ ॥
କହନ୍ତି ନେମାଳ ଅଚ୍ୟୁତ । ସେ ରାମଚନ୍ଦ୍ର ଶିଷ୍ୟକାନ୍ତ ॥
ସୁଜନ ଗୁପତ କରିବ । କହି ଅଛନ୍ତି ବାସୁଦେବ ॥
ଯେ ଆତ୍ମା ଜ୍ଞାନୀ ସାଧୁନର । ତା ପାଦେ ଅଚ୍ୟୁତ କିଙ୍କର ॥

ଇତି ଶ୍ରୀ ବ୍ରହ୍ମାଙ୍କୁଳିବର୍ଣ୍ଣନେ ଚନ୍ଦ୍ରକାନ୍ତ ହେତୁ
ଭୂଷଣ୍ଡବଶିଷ୍ଠସମ୍ବାଦେ ଶ୍ରୀ ଗୁରୁଶିଷ୍ୟ ଉପଦେଶେ
ଏକାଦଶ କଳ୍ପଉକ୍ତଃ ।



## ଦ୍ୱାଦଶ କଳ୍ପ

ଶ୍ରୀ ଭୁଷଣ୍ଡ ଉବାଚ ।

ଏବେ ହୋ ଶୁଣ ମହାମୁନି । କହିବା ବ୍ରହ୍ମଯୋଗ ବାଣୀ ॥
ଯେ ଜ୍ଞାନ ସାଧିଣ ଈଶ୍ୱର । ଯୁଗ ଯୁଗାନ୍ତେ ଅଜାମର ॥
ଏଥା ସ୍ନେହ ଭାବେ ମୁଁ କହୁନ୍ତି । ତୁ ଆନେ ନ କହିବୁ କାହିଁ ॥
ସପତବାର ତଥି ଖେଳ । ସପ୍ତାଙ୍ଗେ ବନ୍ଦନ୍ତି ନିଷ୍କଳ ॥

ଏ ଆଦ ବାର ତିଥି ଧର । ଟବନ ସାଧନା ନ କର ॥
ଆଗୃର ନିଦ୍ରା ବନ୍ଧି ଯେତେ । ଏହା ନ ସାଧ କଦାଚିତେ ॥
କେବଳ ନିଜ ଦେହ ଧର । ଇନ୍ଦ୍ରିୟ ତର୍ପଣ ନ କର ॥
ହିଂସା ଅଇର ତମ ଗୁଣ । ତେଜ ସକଳ ମନୁଁ ବାଦ୍ଧ ॥
ଯାନ୍ତୁ କୋଠାରେ ସତ୍ୟ ଗୁଣ । ଆରାଧ୍ୟ ନିଜ ଆତ୍ମା ଚିହ୍ନ ॥
ମସ୍ତରେ ବାମଅଙ୍ଗ ପଡ଼ି । ବାମ ଭୁଜରେ ଶିର ପଡ଼ି ॥
ଦକ୍ଷିଣେ ବାମ ପାଦ ଛନ୍ଦ । ବାରୁଣ ପଥରେ ନିରୋଧ ॥
ବାମାଙ୍ଗେ ପକାଇ କପାଟ । ଦକ୍ଷିଣେ ଏକ ଧାର କାଠ ॥
ବାରକୁ ବାର ସମକର । ବଶିଶ କଳାରେ ସନ୍ଧର ॥
ଚନ୍ଦ୍ରମା ଫେରାଅ ଉର୍ଦ୍ଧ୍ୱକୁ । ବାହାର ବାର ଭିତରକୁ ॥
ଜାଣି ନ ଢୋଳିବୁ ବାବୁ । ସହଜ ସ୍ୱଭେ ଚଳାଇବୁ ॥
ଧଇନ କର ହେତୁ ଧାଇଁ । ଏ ସେ ଅଖଣ୍ଡ ଜ୍ଞାନ ଭୂଇଁ ॥
ଏ ଜ୍ଞାନ ସର୍ବ ଜ୍ଞାନେ ଶ୍ରେଷ୍ଠ । ଫେଡ଼ି କହିଲୁ ହେ ବଶିଷ୍ଠ ॥
ଏ ତତ୍ତ୍ୱ କାନ୍ତ ହେତୁ ସାର । ଅଖଣ୍ଡ ଆତ୍ମାର ବଗୃର ॥
ପରମ ସ୍ୱଭେ ଏ ସାଧନ । ଦୀକ୍ଷା ଅନାଦ୍ୟ ଧର୍ମ ହିନା ॥
ଏ ଧର୍ମେ ଆଶ୍ରୟ ଯେ ନର । ମୁରେ ବନ୍ଦନ୍ତି ତା ପୟର ॥
ତ୍ରିଗୁଣ ବନ୍ଧନ ତା ତୁଟେ । ବୁଜି ନମ୍ରନାନଳ କଟେ ॥
ଦେହନ୍ତା ବିଷ୍ଣୁ ଗର୍ଭେ ବାସ । ସେ ଅଟେ ଅଲେଖଙ୍କ ଶିଷ୍ୟ ॥
ଆବର ବିଷମ ସଂଯୁତ । କହିବା ଶୁଣ ତପୋବନ୍ତ ॥
ଏ ଦେହେ କର୍ମାଦ ଅଇର । ଅଛନ୍ତି ଆତ୍ମାକୁ ଆବୋର ॥
ନାଦ ମନକୁ ଭ୍ରମାଇବେ । ମାୟା ସଂକଳ୍ପ ମଦାଳବେ ॥
ତେବେ ସକଳ ସଙ୍ଗ ତେଜ । ଏକାଗ୍ରେ ଚିତ୍ତକୁ ନମଙ୍କି ॥
ଅନନ୍ତ କଳ୍ପ ଧୂର୍ମପାନେ । ଭକ୍ଷଣ କର ପ୍ରତିଦିନେ ॥
ବ୍ରହ୍ମାଣ୍ଡ କହୁଛନ୍ତି ମୋତେ । ଫେଡ଼ି ମୁଁ କହୁଅଛି ତୋତେ ॥
ଶ୍ରେଷ୍ଠ ଶିମୂଳି ବୃକ୍ଷ ମୂଳ । କାଟି ଭୁଞ୍ଜିବ ଛଡ଼ି ପଳ ॥
ଛଡ଼ି ତବସ ପୂର୍ଣ୍ଣ ଅନ୍ତେ । ଭକ୍ଷଣ କରିବ ଏକାନ୍ତେ ॥
ପୁରୁଷା ବଳ ଛୟ ପଡ଼ିବ । ପକାଇ ନଗ୍ନ ଆଣିବ ॥

ଏକ ଅଧିକ ବିଂଶ ଦିନ । ଭକ୍ଷଣ କରିବ ଯତ୍ନେଣ ॥
କାମିଙ୍କ କାମ ହେବ ଦୂର । ଧାରଣା ରହିବ ଶରୀର ॥
ଧ୍ରୁବ ଏ ବଚନ ମୋ ସତ୍ୟ । ଦୂର ହୋଇବ ବିଘ୍ନକୃତ୍ୟ ॥
ବିନା ଆହାରେ ତନୁ ଧରି । କ୍ଷୀଣ ନୋହିବ କାୟା ଟିକି ॥
ଗୁପତ ଜ୍ଞାନ ଏ ବିଚାର । ଅଜ୍ଞାନ ଜନେ ଅଗୋଚର ॥
ଫେଡ଼ି କହିଲି ମାୟାନାହିଁ । ଇହବୁ ନିଜ ଆତ୍ମା ଧାଇ ॥
ଶୁଣି ପ୍ରଚଣ୍ଡ ସୁତ ବାଣୀ । କହେ ବଶିଷ୍ଠ ତପୋଧନ ॥
ହେ କାକ ପଚାରଇ ତୋତେ । ଏ କଳ୍ପ ଭୁଞ୍ଜିବା କେମନ୍ତେ ॥
ନିର୍ଜନେ କିବା ଜନ ମେଳେ । ଆହାରେ କିବା ନିଆହାରେ ॥
ସମ୍ମୁଖେ ମୋତେ ଆଜ୍ଞାଦିଅ । ଦକ୍ଷିଣାବୃତ୍ତି ହେଉ ଦେହ ॥
ତୁମ୍ଭେ ମୋ ଆତ୍ମା ନିଜ ଗୁରୁ । ଆଜ୍ଞା ପ୍ରକାଶ ଶ୍ରୀମୁଖରୁ ॥
ଯୁଗ ଯୁଗାନ୍ତେ ତୁ ମୋ ସଖା । ନେଇ ଅଖଣ୍ଡ ଭୂମି ଦେଖା ॥
ଏମନ୍ତ କହି ମହାପତି । ଆନନ୍ଦେ ନମିଲେ ଧରତି ॥
କହନ୍ତି ଅଚ୍ୟୁତ ବିଶ୍ୱାସ । ଶୁଣ ହୋ ରାମଚନ୍ଦ୍ର ଶିଷ୍ୟ ॥
ଏ ଗୁପ୍ତ ନ କହିବ କାହିଁ । ଫେଡ଼ି କହିଲୁ ମାୟା ନାହିଁ ॥
ମୋତେ ଚହ୍ନାଇ ଇନ୍ଦ୍ର ହରି । ତେଣୁ ଏ ଜ୍ଞାନ ହୃଦେ ସ୍ଫୁରି ॥
ଗୁପତ ଗୁପତୁଁ ଗୁପତ । କହିଲେ ବରଜ ଅଚ୍ୟୁତ ॥

ଇତି ଶ୍ରୀ ବ୍ରହ୍ମଶାଙ୍କୁଳବର୍ଣ୍ଣନେ ଚନ୍ଦ୍ରକାନ୍ତ ହେତୁ ଭୂଷଣ୍ଡ ବଶିଷ୍ଠସମ୍ବାଦେ ଶ୍ରୀ ଗୁରୁଶିଷ୍ୟ ଉପଦେଶେ ଦ୍ୱାଦଶ କଳ୍ପ ଉକ୍ତଃ ॥



## ତ୍ରୟୋଦଶ କଳ୍ପ ।

### ଭୂଷଣ୍ଡ ଉବାଚ ।

କହନ୍ତି ପ୍ରଚଣ୍ଡ ତନୟି । ବଶିଷ୍ଠେ ଦୟା ଭାବ ବହି ॥
ଶୁଣ ହେ ବ୍ରହ୍ମାର ନନ୍ଦନ । କହିବା ଗୁପତ ବଚନ ॥
ସିଦ୍ଧ ସାଧୁକ୍ୟ ବନବାସେ । ନଗମ ଭଜନ ସନ୍ୟାସେ ॥

ବହ୍ନିଣ ଦିଗାମ୍ବର ବେଶେ । କରିବ କ୍ଷୀର ନୀର ଗ୍ରାସ ॥
ନିର୍ଜନେ ଏକାକୀ ବଇଠେ । ଥିବ ନିଗମ ପଥେ ଦୃଷ୍ଟି ॥
ଗୁରୁ ଶ୍ରୀମୁଖଁ ଆଜ୍ଞାପାଇଁ । ଦକ୍ଷିଣାବୃତ୍ତ କରି ବାଇ ॥
ତାମାଙ୍ଗେ ପକାଇ କପାଟି । ଦିବା ରଜନୀ ଥିବ ଖଟି ॥
ଯେ ଗୁରୁ ଜାଣନ୍ତି ଏ ତତ୍ତ୍ୱ । ସେ ପାଦେ ସେବିବ ନିଅତ ॥
ସମ୍ମୁଖେ ଆଜ୍ଞାଦେନ ଜୀବ । ଏ କଳ୍ପ ନିର୍ଜନେ ଭୁଞ୍ଜିବ ॥
ଦୁଗ୍ଧ ପାନରେ ରଖି ଦେହ । ନୋହିଲେ ନୀର ପାନେ ରହ ॥
ବଞ୍ଚିବ ଏକତ୍ରିଂଶ କାଳ । ତା ଅନ୍ତେ ଭକ୍ଷି ଫଳମୂଳ ॥
ତୃତୀୟ ସମ୍ବତ୍ସର ଯାଏ । ଏ ଭାବେ ସ୍ଥିର କରି କାୟ ॥
ଆସନ ପାଳନ୍ତି ଫେରିବ । ଦକ୍ଷିଣାବର୍ତ୍ତ ସ୍ଥିର ହେବେ ॥
ପାଳନ୍ତି ଯିବ ଚନ୍ଦ୍ରକାନ୍ତ । ଅସନ ତେଜ ହେବ ଶାନ୍ତ ॥
ଭ୍ରମିବ ଦେଶେ ବନଘୋର । ତେଜିବ କଣ୍ଠ ଆହାରେ ॥
ଇନ୍ଦ୍ରିୟ ସ୍ୱଚ୍ଛ ଜୀତେନ୍ଦ୍ରିୟ । ଯୁଗାନ୍ତେ ଦେହ ନୁହେଁ କ୍ଷୟ ॥
ଅଲେଖ ଦର୍ଶନେ ନିଶ୍ଚିନ୍ତ । ଅନ୍ତେ ଅଲେଖ ଗର୍ଭେ ସ୍ଥିତ ॥
ଅହିଂସା ଲକ୍ଷଣ ଏ ଧର୍ମ । ନିଷ୍କାମ ନିତ୍ୟ ସେବା କର୍ମ ॥
ଏ ଚନ୍ଦ୍ରକାନ୍ତର ବିଭୂତି । ବଶିଷ୍ଠ ଦୃଢ଼େ ଥାଅ ତେତି ॥
ଏ ଗୁପ୍ତ ସନାତନ ଦୀକ୍ଷା । ଏକାଙ୍ଗ ହେତୁ ପଥ ଶିକ୍ଷା ॥
ବିଶ୍ୱ ଉତ୍ପତ୍ତି ସ୍ଥିତି ଯହିଁ । ମନ ଉଦାସ ମତେ ଧାଇ ॥
ବାହ୍ୟ ସଙ୍କଳ୍ପ କର୍ମ କାଟ । ଅନ୍ତେ ନିର୍ଗୁଣ ପଦେ ଖଟ ॥
ସକଳ ଧର୍ମପରେ ଧର୍ମ । ଏ ଅଣାକାର ଦକ୍ଷ ମର୍ମ ॥
ତେଣୁ ବେଦୁଁ ଏ ବାକ୍ୟ ଉଦେ । ମୋହନ୍ତ ଶିକ୍ଷା ଦୀକ୍ଷା ପଦେ ॥
ସମାନ ତ୍ରିଲୋକ ଏ ଲୋକ । ଏକ ବ୍ରହ୍ମର କ୍ରୀଡ଼ା ଦେଖ ॥
ନାନା ସ୍ୱରୂପ ବର୍ଣ୍ଣାକାର । ମହିମା ନିଗମେ ଗୋଚର ॥
ନିର୍ଗୁଣ ପୁରୁଷ ମୁଦ୍ରର । ଅରୂପେ ସର୍ବଭୂତେ ପୂର ॥
ଆତ୍ମା ଆପେ ତ ଭଜନୀ । ଆପଣା କଲା କର୍ମେ ବଣା ॥
ସିଦ୍ଧ ଯୋଗୀନ୍ଦ୍ର ବ୍ରହ୍ମଜ୍ଞାନୀ । ଏ ଭାବେ ଆତ୍ମା ଭୂତେ ମାନି ॥
ସକଳ ଆତ୍ମାମୟ ତେଜ । ନିଜ ମହିମା ପାଦେ ଭଜ ॥

ବଶିଷ୍ଠ କହିଲ ଏ ସାର । ଏ ଧାଷ୍ଠା ହୃଦପଦ୍ମେ ଧର ॥
ଦକ୍ଷିଣେ ଶୂନ୍ୟକୁ ଉଜାଣି । ମନ ମହକ ସୂଷେ ଠାଣି ॥
ପରେ ପରମ ଅଙ୍ଗେ ମିଶ । ପ୍ରକୃତ ହୋଇବ ପାଉଁଶ ॥
ଧ୍ରୁବ ବଚନ ଏ ମୋହୋର । ହେ ମୁନି ହୃଦପଦ୍ମେ ଧର ॥
ଫେଇଲୁ ମାୟା ନାହିଁ କିଛି । ତୁମ୍ଭେ ତ ପଦ୍ମଯୋନି ବସି ॥
ମୋର କଲ୍ୟାଣ ତୋତେ ହେଉ । ତେ ତଉ ବ୍ରହ୍ମପଦ୍ମେ ରହୁ ॥
ଗୁପତ ବ୍ରହ୍ମଜ୍ଞାନ ଖଣ୍ଡ । ବଶିଷ୍ଠେ କହିଲେ ଭୁଷଣ୍ଡ ॥
ଅଚ୍ୟୁତ ରାମକୁ କହନ୍ତି । ଏ କଳିଯୁଗେ ଏ ଗୁପତ ॥
ସୁଶିଷ୍ୟ ପାଶେ ଗୁରୁ କହେ । ହେ ଗୁରୁ ବ୍ରହ୍ମଜ୍ଞାନ ମଟ୍ୟୁ ॥
ସେ ଗୁରୁ ବଚନ ବଳୋଇ । କହେ ଅଚ୍ୟୁତା ନନ୍ଦ ଭାଇ ॥

ଇତି ଶ୍ରୀ ବ୍ରହ୍ମଶାଙ୍କୁଳବର୍ଣ୍ଣନେ ଚନ୍ଦ୍ରକାନ୍ତ ହେତୁ ଭୁଷଣ୍ଡ
ବଶିଷ୍ଠ ସମ୍ବାଦେ ଶ୍ରୀ ଗୁରୁଶିଷ୍ୟ ଉପଦେଶେ ଷଷ୍ଠ ଦଶ
କଳ୍ପ ଉକ୍ତ ॥

ସମାପ୍ତ ।



# ଶ୍ରୀ ଅଣାକାର ସଂହିତା ।

ଅଣାକାରଂ ମହାଶୂନ୍ୟଂ । ଶୂନ୍ୟମଧ୍ୟେ ନିରାମୟଂ ।
ନିରାମୟଂ ଅଙ୍ଗ ଜ୍ୟୋତି । ସ ଜ୍ୟୋତିଃ ଭଗବାନ ସ୍ୱୟଂ । ଗୀତା ।

ଜୟ ଜୟ ପ୍ରଭୁ ଜଗତଈଶ୍ୱର ନମୁଁ ତୋ କରୁଣାସାଇଁ ।
ନମୋ ବିଶ୍ୱେଶ୍ୱର ନମୋ ଦୟାନିଧି ମହିମା କେ ପାରେ କହି । ୧ ।
ଅବ୍ୟକ୍ତ ବ୍ରହ୍ମହିଁ ଅବିନାଶି ନାଥ ସୁଦୟା କରିବ ବାରେ ।
ଅନେକ ଯୋଗେ ଯା ବ୍ରହ୍ମା ନ ପାଇଲେ ସେ ଜ୍ଞାନ କହିବ ମୋରେ ॥
ରାମଚନ୍ଦ୍ର ଦାସ ବଚନ୍ତୁ ଦେଖିଣ ଶ୍ରୀକୃଷ୍ଣ ପାଦରେ ଧ୍ୟାନ ।
ପାମର ଅଚ୍ୟୁତ ପଦ୍ମପାଦେ ଚିତ୍ତ କହଇ ଶ୍ରୀକୃଷ୍ଣ ନାମ । ୩ ।
ଶ୍ରୀଗୁରୁ ଚରଣେ ବିନୟ ହୋଇଣ ବୋଲେ ରାମଚନ୍ଦ୍ର ଦାସ ।
ଉଦ୍ଧାର କର ହେ ପ୍ରଭୁ ମୋତେ ବାରେ ଫିଟାଇଣ ମୋହ ଫାଶ ॥
ଚରଣେ ପଡ଼ିଣ କରେ ପ୍ରଦକ୍ଷିଣ ବୋଲେ ଦ୍ୱିଜରାମଦାସ ।
ପୂଜା ଅକ୍ଷତ ଯେ ଶ୍ରୀଫଳ ରଖିଣ ଉଠି ଉଭା ହୁଏ ପାଶ । ୫ ।
ବୋଲଇ ହେ ଦେବ ଗୁରୁ ପରଂବ୍ରହ୍ମ ମୋହରୁ ଉଦ୍ଧାର ମୋତେ ।
ତୁମ୍ଭ ଶ୍ରୀଚରଣେ ଶରଣ ପଶିଲି ବିନୟ ମୋହର ଶତେ । ୬ ।
ନାମ ତତ୍ତ୍ୱ ମୋତେ ବୁଝାଇ କହିବ ସଂଶୟ ମନୁ ଦହିବ ।
ତୁମ୍ଭ ଶ୍ରୀଚରଣେ ନିଶ୍ଚଳ ହୋଇଣ ମନ ମୋ ନିରତେ ଥିବ । ୭ ।
ଶୁଣି ଯେ ଅଚ୍ୟୁତ ପଦ୍ମପାଦେ ଚିତ୍ତ ରାମକୁ ପାଶେ ବସାଇଁ ।
ଶୁଣ ରାମଦାସ ଯାହା ପଚାରିଲ ତୋ ଆଗେ କହିବା ଫେଡ଼ି । ୮ ।
ଯାହା ପଚାରିଲୁ ନିରକୁମର ବ୍ରହ୍ମର ତତ୍ତ୍ୱଟି ସେହୁ ।
ବିଶେଷ ତୋ ଆଗେ ଥୋକାଏ କହିବା ନାମ ବ୍ରହ୍ମବୋଲି ହେତୁ ॥
ଆଗେ ହେଲା ନାମ ପଛେ ହେଲା ବ୍ରହ୍ମ ନାମଟି ସବୁର ମୂଳ ।
ନାମଟି ଜଗତ ବ୍ୟାପିଣ ଅଛଇଁ ନାମଟି ସକଳ ମୂଳ । ୧୦ ।

ନାମଟି ହିଁ ତତ୍ତ୍ୱ ନାମଟି ହିଁ ସତ୍ୟ ନାମଟି ଲୀଳାକରତା ।
ନାମଟି ହିଁ ଯୋଗ ଭୋଗ କରୁଥାଇ ନାମଟି ସବୁ ହରନ୍ତା । ୧୧ ।
ନାମକୁ ଭେଦଲେ ଧନ୍ଦା ତୁଟିଯିବ ଫିଟିବ ଯମ ଅର୍ଗଳ ।
ନାମକୁ ଭେଟିଲେ ବ୍ରହ୍ମକୁ ଦେଖିବୁ ଯମପୁର ଯିବୁ ବଳି । ୧୨ ।
ନାମ ଗଲେ ରୂପ ନ ଛୁଇଁବେ କେହି ନାମ ଥିବାଯାଏ ଭଲ ।
ନାମ ଗଲେ ରୂପ ବ୍ୟର୍ଥ ହୋଇବ ରୂପକୁ ମଣିବେ ସଲ । ୧୩ ।
ଗୀତା ଭାଗବତ ପୁରାଣ ଆଦି ଏ ସବୁର ମୂଳଟି ନାମ ।
ନାମରୂପ ଅଟେ ନିଶ୍ଚିତ ଅନାମ ବୋଲି ତୁହି ଶୁଣ ଧାମ । ୧୪ ।
ଅନାମ ଅଣଅକ୍ଷର ବୋଲି ଜାଣ ନାମ ତନ୍ତ୍ର ବୋଲି ତାକୁ ।
ଅନାଦି ଅନନ୍ତ ଅବ୍ୟକତ ନାଦ ନ ଜାଣି ତହିଁ ପରକୁ । ୧୫ ।
ଯେସନ ସାଗରେ ସର୍ବ ଜଳମାନେ ମିଳନ୍ତି ଯଥା କାଳରେ ।
ସ୍ୱନାମ ଗୁଣମାନ ଯେ ସଂହରଣ ରହି ବରୁଣ ଆଳରେ । ୧୬ ।
ସେ ଯେ ସିନ୍ଧୁ ଜଳ ତହିଁ ସର୍ବ ମେଳ ସକଳ ତତ୍ତ୍ୱଟି ସେହି ।
ସର୍ବ ଆଦିମୂଳ ପରମ ମଙ୍ଗଳ ଅଣାକାର ବୋଲି ଯେହି । ୧୭ ।
ଅଣାକାରଟି ଆକାରରେ ମିଶିଲେ ତହିଁରୁ ରୂପ ପ୍ରକାଶ ।
ଅନାମିକାକୁଟି ଅଣାକାର ବୋଲି ଆକାରରେ ରୂପ ବାସ । ୧୮ ।
ସର୍ବ ନାମ ମୂଳ ଅନାମରେ ଠୁଳ ଅନାମିକା ବୋଲି ନାମ ।
ତୋ ଆଗେ କହିଲୁଁ ବରଜକୁମର ଆସେ କର ନାମ ବ୍ରହ୍ମ । ୧୯ ।
ନାମକୁ ପାଇଲେ ରୂପ ଲୋଡ଼ାନାହିଁ ହଙ୍କରୂପ ଯହିଁ ଠୁଳ ।
ନାମକୁ ଚହ୍ନିଲେ ଧନ୍ଦା ଫିଟିଯିବ ସବୁ ନାମରେ ଯେ ମୂଳ । ୨୦ ।
ସବୁଠାରେ ନାମ ଥାଇଁ ନ ମିଶଇ ରୂପରେ କରଛୁ ବାସ ।
ଅବ୍ୟୟ ଅନାଦି ଅବିନାଶୀ ବ୍ରହ୍ମ ସର୍ବ ରୂପରେ ପ୍ରକାଶ । ୨୧ ।
ତାହା କହିଦେବା ବ୍ରଜନନ୍ଦନ ସାଧୁଙ୍କ ସଙ୍ଗୋଳ ଧନ ।
ଯେଣୁ ଆମ୍ଭର ଆତ୍ମା ତାହା କହିଲୁଁ ଶୁଣ ବାବୁ ଦେଇ ମନ । ୨୨ ।
ସେ ନାମ ଯେମନ୍ତ ଜଗତେ ପୂରଛୁ କେ ଜାଣେ ତହିଁର ଗତି ।
କେବଳ ଗୁରୁ ଆଜ୍ଞା ଯୋଗେ କହିବା ଶୁଣ ଦେଇ ହେବୁ ମତି ॥
ବକ ଯେସନ ଇନ୍ଦ୍ରିଗଣ ନିରୋଧି ନିଶ୍ଚଳ ଧ୍ୟାନରେ ରହି ।

ମୀନ ପଡ଼ିଲେ ସେ ଝାମ୍ପେଣ ଧରଇ ତେସନ ଯେବେ ହୁଅଇ । ୨୪ ।
ସ୍ନେହ ମନକୁ ନେଇ ନିଷ୍ଟଳେ ରଖିଲେ ସକଳ ସୁଖ ପାଇବୁ ।।
ନାମ ତତ୍ତ୍ୱରୂପେ ଅରୂପ ନଗରେ ନିବାସ ବସ ଚିହ୍ନିବୁ । ୨୫ ।
ସେ ନାମ ମହିମା ଶୁଣ ବ୍ରଜମଣି ଜଗତେଣ ଅଛି ପୂରି ।
ଅଣଅକ୍ଷରକୁ ଭଜିଲେ ସେ ନାମ ବ୍ରହ୍ମଙ୍କୁ ଯେ ଠାବ କରି । ୨୬ ।
ସେ ନାମ ବଞ୍ଚୁଛି କାହିଁରେ ସାଜୁଛି କାହିଁରେ ଅଛଇ ରଜ ।
ତାହା ନ ଥିବା ନୋହଇଣ ଠାବ ନାହିଁ ସବୁଠାରେ ନାମ ସାଜ । ୨୭
ବାଜୁଅଛି ନାମ ଯେତେଠାରେ ଦେଖ ଚଳପ୍ରଚଳଟି ସେହି ।
କୀଟ ପତଙ୍ଗ ପକ୍ଷୀ ଖଗ ନାଗ ସବୁଠାରେ ନାମ ରହି । ୨୮ ।
ସଜଅଛି ନାମ ଯେତେଠାରେ ରମ ଅଚଳ ଅଟଇ ସେହି ।
ଜୀବ ସ୍ୱରୂପେ ବଜସ୍ତୁ ନାମ ବ୍ରହ୍ମ ଗଜା ଅଙ୍କୁରଇ ଯହିଁ । ୨୯ ।
ସଜଅଛି ନାମ ଯେତେ ଯେତେ ଠାରେ ଶୁଷ୍କଅସ୍ଥି କାଷ୍ଠ ତୃଣ ।
ଗଜା ନ ଅଙ୍କୁରେ ଇସ୍ଥୁହେ ନ ଚଳେ ତହିଁ ନାମ ଥାଇ ପୁଣ । ୩୦ ।
ସାଜଅଛି ନାମ ଅନଳରେ ଦେଖ ଗୁଳିଲେ ସେ ଜଳିଯାଇ ।
ଜଳରେ ସ୍ଥଳରେ ନାମ ସାଜିଅଛି ନ ଚଳେ ନିଷ୍ଟଳେ ଥାଇ । ୩୧ ।
ସାଜିଅଛି ନାମ ଲୋହ ପାଷାଣରେ ପବନ ଅଛଇ ରଜ ।
ବିନା ଗୁଳଟାରେ ପବନ ଚଳଇ ନାମ ଠାବକରି ଖୋଜ । ୩୨ ।
ଏହିରୂପେ ନାମ ଜଗତେ ପୂରିଛି ରୂପକୁ ଜାଣନ୍ତି ସର୍ବ ।
ବ୍ରହ୍ମଙ୍କୁ ହିଁ କେହି ଭେଦ ନ ପାରନ୍ତି ହୋଇଥାନ୍ତି ମନେ ଗର୍ବ । ୩୩ ।
ଏକ ବ୍ରହ୍ମ ଦେଖ ଜଗତେ ପୂରିଛି ନାମ ରୂପରେ ଅଶେଷ ।
ନାମକୁ ଚିହ୍ନିଲେ ଧନ୍ୟ ଚିହ୍ନିବି ଶୁଣ ତୁ ହୋ ରାମ ଦାସ । ୩୪ ।
ଚମ୍ପା, ନାଗେଶ୍ୱର, ପୁନାଗ, ବକୁଳ, ମନ୍ଦାର, ପାରିଜାତକ ।
ଆମ୍ବ, ଜମ୍ବୁ ଆଦି କଦମ୍ବ ସହିତେ ନଟିକାଳାଦି ଅଶୋକ । ୩୫ ।
ଏଥିରେହିଁ ନାମ ବ୍ରହ୍ମ ପୂରିଅଛି ଆନାମିକା ଠାବ କରି ।
ତୃଣ ଆଦି କରି ଯେତେ ତରୁବର ମିଶାଇ ଅନାମେ ଧରି । ୩୬ ।
ଖଗ ମୃଗ ଗଜ ଶୂକର ସହିତେ ସ୍ନେହନାମେ ନାମ ମିଶିଛି ।
ମାତା ପିତା ପୁତ୍ର ଇଷ୍ଟବନ୍ଧୁ ମିତ୍ର ଯହିଁରେ ଯେମନ୍ତେ ଗଛି । ୩୭ ।

ଏ ନାମକୁ ଯେବେ ଚିହ୍ନି ତୁ ପାରବୁ ମନର ସଂଶୟ ଯିବ ।
ନାମ ଧଇଲେ ନାରାୟଣ ଦେବତା ନିକଟେ ସୁଦମ୍ବା ଥିବ । ୩୮ ।
ଓଁକାର ଠାକୁ ଯେତେ ଯେତେ ମନ୍ତ୍ର ସବୁ ଏଥିର ଭିତରେ ।
ଏ ବୋଧ ମନ ଏଥି ବୋଧ ହୁଅଇ ରହିଲେ ସ୍ନେହା ଭିତରେ । ୩୯ ।
ନାନା ପାତକ କରିଥିଲେ ତରଇ ଏନାମେ ରହିଲେ ମଜ୍ଜି ।
ସକଳ ଦୁଷ୍କୃତମାନ ନାଶ ଯାଇ ଅଣଅକ୍ଷର ଯେ ଭଜି । ୪୦ ।
ଅଖିଳ କୋଟିଏ ବ୍ରହ୍ମାଣ୍ଡ ଭିତରେ ଅଣ ଅକ୍ଷରଟି ସାର ।
ଅନେକ ଯୋଗରେ ବ୍ରହ୍ମା ନ ପାଇଲେ ସେ ଅଟେ ଗୁରୁଭଣ୍ଡାର ॥
ପୂର୍ବେ କଉଁ ତପ କରିଥିଲି ମୁହିଁ ଶ୍ରୀକୃଷ୍ଣ କରୁଣା କଲେ ।
କହ୍ନା ଅବତାରେ କମଳଲୋଚନ ଶ୍ରୀମୁଖେ ମୋତେ ବୋଇଲେ ॥
ସୁଦାମ ନାମ ଅଛଇ ଯେ ମୋହୋର ଶ୍ରୀକୃଷ୍ଣ କରୁଣା ଯେଣୁ ।
କଳିଯୁଗରେଣ ପାମର ଅଚ୍ୟୁତ ନାମ ମୋ ଅଛଇ ତେଣୁ । ୪୩ ।
ଆପଣେ ଅନାଦି ଅବ୍ୟକ୍ତ ବ୍ରହ୍ମ ଶ୍ରୀଗୁରୁରୂପେଣ ଆସି ।
ରୂପ ବେଶ ତାଙ୍କ ଅଖଣ୍ଡିତ କେଶ ଦଣ୍ଡ ବ୍ରହ୍ମ ତପସୀ । ୪୪ ।
ପଶ୍ଚିମ ବଟହିଁ ପାରୁଶେଣ ବସି ଶ୍ରୀକୃଷ୍ଣ ନାମ କହିଲେ ।
ଶ୍ରୀ ବିଦ୍ୟାନନ୍ଦ ବୋଲିଣ ସେହୁ ନାମ ବ୍ରହ୍ମ ବୋଲିଣ ବୋଇଲେ ॥
ଆପେ ପରଂବ୍ରହ୍ମ ସୁଦାମ୍ବା କରିଣ ବୋଇଲେ ଶ୍ରୀମୁଖେ ଯେଣୁ ।
ଶ୍ରୀଗୁରୁ ବୋଲି ମୁଁ ଚିତ୍ତରେ ଚିହ୍ନିଲି ପାଦରେ ପଡ଼ିଲି ତେଣୁ ॥
ପ୍ରସନ୍ନ ହୋଇଣ ବୋଇଲେ ସେ ମୋତେ ଆମ୍ଭେ ତୋର ଗୁରୁ ଅଟୁଂ ।
ବ୍ରହ୍ମାନନ୍ଦ ଆମ ଶ୍ରୀଗୁରୁଙ୍କ ନାମ ଅଇଲୁ ତାରିଷି ତଟୁ । ୪୭ ।
ତାହା ଶୁଣି ମୁଁ ଯେ ଚରଣେ ପଡ଼ିଲି ସୁଦାମ୍ବା ମୋଠାରେ କଲେ ।
ଅଣଅକ୍ଷର ଉପଦେଶ ଦେଇଣ ଅନ୍ତର୍ଦ୍ଧାନ ହୋଇଗଲେ । ୪୮ ।
ସ୍ଫୁରିଲି ସୁଗତ ସକଳ ଯେ ଭେଦ କର୍ମ ବାସନା ତୁଟିଲା ।
ପାମର ଅଚ୍ୟୁତ ତେଣୁ କରି ପଦ୍ମବନରେ କାୟା ଲୋଟିଲା । ୪୯ ।
ଶୁଣ ରାମ ଦାସ ଯେତେ ଉପଦେଶ ସବୁର ମୂଳଟି ନାମ ।
ନାମକୁ ଭଜିଲେ ନାହିଁ କାଳଭୟ ନ ଦଣ୍ଡିବ ଆଉ ଯମ । ୫୦ ।
ଯମଦଣ୍ଡକୁ ମୋହୋର ଭୟ ନାହିଁ ଆଜହୁଁ ମୃତ୍ୟୁ ହୋଇଛି ।

ଜାହ୍ନା ପ୍ରାପ୍ତେ ହୋଇ ତେଣୁ କରସିନା ଆରମ୍ଭେ ତନୁ ବହିଛୁ ॥
କର୍ମ ସରଗଲେ ଜାହ୍ନା ମୋ: ଚଳିବ ତତ୍ତ୍ୱ ନିରାଧାର ଏହି ।
କେତେ ଦିନକୁ କେତେ କେତେ ବର୍ଷର ରହିବକ ତନୁ କାହିଁ ॥
ତେଣୁ କର ଶୁଣ ବ୍ରଜରାମ ଦାସ ତୁ ଲକ୍ଷ୍ୟ କର ନାମକୁ ।
ଶ୍ରୀଗୁରୁ ଚରଣେ ସେବା କର ନିତ୍ୟ ଛେଦ ଜଞ୍ଜାଳ ଫାଶକୁ ।୫୩।
ସେ ନାମ ମହିମା କହିଲେ ନ ସରେ ଶୁଣ ହୋ ବରଜ ତନୁ ।
ତତ୍ୱ କର ସତ୍ୱ ଗୁଣରେ ମଜ୍ଜିଲେ ନାମ ବିକଶିବ ମନୁ । ୫୪ ।
ତର୍କ ତେଜ ଗୁରୁପାଦେ ଭଜିଲେ ପାଇବୁ ଜ୍ଞାନର ଭୂଇଁ ।
ତୀର୍ଥ ବ୍ରତ ତପ ଫଳହିଁ ପାଇବୁ ଶ୍ରୀଗୁରୁ ଚରଣ ଛୁଇଁ । ୫୫ ।
ଅବିଶ୍ୱାସ କଲେ ଅପ୍ରାଧ ପାଇବୁ ଅନ୍ଧାରେ ବଣା ହୋଇବୁ ।
ଅମୃତ ତେଜିଣ ଅମେଧ ପାନରେ ଅନେକ ଗଞ୍ଜି ହୋଇବୁ । ୫୬ ।
ଶ୍ରୀଗୁରୁ ବଚନ ଅଟେ ବ୍ରହ୍ମଜ୍ଞାନ ଭ୍ରଷ୍ଟ କଲେ ହେବୁ ନଷ୍ଟ ।
ଶୁଣି ରାମ ଦାସ ଚରଣେ ଲୋଟିଣ କାନ୍ଦେ ପ୍ରାଣ କଣ୍ଠଗତେ । ୫୭ ।
ସୁଦୟାହିଁ କର ମନତାପ ହର ଦମ୍ଭ ମୋ ନାଶ ଗୋସାଇଁ ।
ତୁମ୍ଭ ଶ୍ରୀଚରଣ ବିନୁ ପରିତ୍ରାଣ ଅନ୍ୟ ଆଶା ମୋର ନାହିଁ । ୫୮ ।
ଚରଣେ ଲୋଟିଣ ବ୍ରଜରାମ ଦାସ ଉଚ୍ଚେ କରଇ ରୋଦନ ।
ଦେଖି ଗୁରୁଦେବ ଶ୍ରୀଭୁଜେ ତୋଳିଣ ଶିଷ୍ୟକୁ କଲେ ବୋଧନ ॥
କହିବା ତୋ ଆଗେ ଶ୍ରୀଗୁରୁଙ୍କ ଆଜ୍ଞା କହିଲେ ଶାପ ପାଇବୁ ।
ଶ୍ରୀକୃଷ୍ଣ ଭଣ୍ଡାର ଅବ୍ୟକତ ଧନ ପାଇଣ ଶାନ୍ତ ହୋଇବୁ । ୬୦ ।
ଅଣଅକ୍ଷରଠାରୁ ଆଉ ଯେତେକ ଭଜନ ଅଟଇ ଜାଣ ।
ଯୋଗ ମାର୍ଗ ପଥ ଯେତେକ ବୃତ୍ତାନ୍ତ ସେହି ମତ ଅଟେ ଶୁଣ ॥
ଅନେକ କାଳରେ ଯୋଗ ସିଦ୍ଧ ହୋଇ ଜ୍ଞାନ ପ୍ରକାଶଇ ଆସି ।
ଜାହ୍ନାଗଲେ ଆତ୍ମା ବିଅର୍ଥ ହୁଅଇ ଯୋଗ କାରଣ ନ ଆସି । ୬୧ ।
ଅଣ ସାଧନା ଯେ ଅକଳନ୍ତ ଭିତରେ ଶ୍ରୀକୃଷ୍ଣ ଭକତ ପାଇ ।
ଇହ ଲୋକେ ମୁକ୍ତି ନିର୍ମଳ ଆତ୍ମାର ଅନ୍ତେ ବୈକୁଣ୍ଠକୁ ଯାଇ । ୬୩ ।
କହିବା ଶୁଣିବା ପାଇବା ଲଭିବା ଇତ୍ୟାଦି ଅକ୍ଷର ଯେତେ ।

ଏଥିରେହିଁ ନାମ ଥାଇ ନ ମିଶଇ ଭେଦିଲେ ଯିବୁ ପରଚେ ।୬୪।
କହିଦେବା ରାମ ଏଥିର ବୃତ୍ତାନ୍ତ ଶ୍ରୀଗୁରୁ ଭଣ୍ଡାର ଧନ ।
ଶୁଣି ରାମ ଦାସ ଗୁରୁପାଦେ ଆସ ବସିଣ ସୁଶାନ୍ତ ମନ । ୬୫ ।
ବୋଲନ୍ତି ଶ୍ରୀଗୁରୁ ଶୁଣ ବ୍ରଜସୁତ କହିବା ତୋତେ ବୁଝାଇ ।
ପ୍ରଥମେ ଗୁରୁ ଯେ ବିଦ୍ୟା ପଢ଼ାବନ୍ତି ବ୍ରହ୍ମଭାବ ଦୂରେ ଥୋଇ ।୬୬।
ବ୍ରହ୍ମା ବିଷ୍ଣୁ ରୁଦ୍ର ତପକୁ ଯେ ଦୃଶ୍ୟ ଆଦ୍ୟରେ ପଢ଼ାନ୍ତି ଗୁରୁ ।
ସାମ ଯଜୁଃ ଋକ ଅଥର୍ବ ଯେ ଆଦି ପଢ଼ାନ୍ତି ସିଇ ଠାବରୁ ।୬୭ ।
କୋଡ଼ିଏ ଗୋଟିଯେ ଫଳା ପଢ଼ାଇଲେ ରଜତମେ ମନ ରସି ।
ବ୍ରହ୍ମର ଭେଦ କାହୁଁହିଁ ନ ପାଇଣ କର୍ମ ମାର୍ଗେ ମନ ମିଶି । ୬୮ ।
ପଢ଼ାଇଲେ ଗୁରୁ ଅଣଅକ୍ଷର ଯେ ଆଦ୍ୟ ଫଳାରେ ରହିଲା ।
ବ୍ରହ୍ମଜ୍ଞାନ ଗୁରୁ ଦେବଙ୍କ ଭଣ୍ଡାର ଗୁପତ ରୂପେ ଥୋଇଲା । ୬୯ ।
ଗୁରୁଦେବ ଯେତେ ଫଳା ପଢ଼ାଇଲେ ସବୁ ବେଦର ବୃତ୍ତାନ୍ତ ।
ଅଣଅକ୍ଷର ସେ ବ୍ରହ୍ମର ବସ୍ତୁର ରହିଲେ ବେଦର ଅନ୍ତ । ୭୦ ।
ଅଳପ ହୋଇ ଅଲଗେ ରହିଅଛି ଆତ୍ମାନେ ନାହିଁ ଯେ ପ୍ରୀତି ।
ଏଣୁକରି କେହି ଭେଦି ନ ପାରିଲେ ବେଦରେ ବଳିଲା ମତି ॥
କର୍ମ ଧର୍ମ ତପ ଦାନ ଯଜ୍ଞଆଦି ବେଦର ବିଧାନ ଏହି ।
କର୍ମ ଆଚରଣେ ନରତେ ରସିଲା ଜ୍ଞାନ ଗୁରୁ ଆଜ୍ଞା ନାହିଁ । ୭୨ ।
ପୂର୍ବ ହେତୁ ଥିଲେ ଜ୍ଞାନ ପ୍ରାପ୍ତ ହୋଇ ପୂର୍ବ ଭାଗ୍ୟେ ପାଇ ଏହା
ପରତେ ଗୁରୁ ପାର କରି ପାରନ୍ତି ଯମ ଜଞ୍ଜାଳ ଦୋରେହା । ୭୩।
ସଂସାରରେ କର୍ମ ମୂଳକି ଅଟଇ ଏଥି ନାହିଁ ଭକ୍ତି ଲେଶ ।
କର୍ମରେ ପ୍ରାଣୀ ଆତଯାତ ହୁଅନ୍ତି ଉତ୍ପତ୍ତି ପ୍ରଳୟ ନାଶ । ୭୪ ।
ଦାନ ଯଜ୍ଞ କ୍ରିୟା କରି ପ୍ରାଣିମାନେ ଗୁଣ ସମ୍ପତ୍ତି ଲଭନ୍ତି ।
ଫଳ ସମ୍ପୂର୍ଣ୍ଣ ହୋଇଗଲେ ସଂସାରେ ନାନା ଯୋନିରେ ଭ୍ରମନ୍ତି ।୭୫।
ଏଣୁକରି କର୍ମ ଅଟଇ ଯେ ଭ୍ରମ ପରତେ ତାକୁ ନ ଯିବୁ ।
ଅକର୍ମେ ନିଷ୍ଠାଳେ ବାସୁଦେବ ଭକ୍ତି ଅନୁବରତେ ମଜ୍ଜିବୁ । ୭୬ ।
ଏକା ବ୍ରହ୍ମ ଦେଖ ଜଗତେ ବ୍ୟାପିଛି ଛିଦ୍ର କଲେ ହୁଏ ଖେଦ ।
ଜାତି ଅଜାତି ଯେ ନିଷ୍ଠାପର ନାହିଁ ନାହିଁ ତହିଁରେ ଯେ ଭେଦ ॥

ଯେଣୁ କର ବ୍ରଜ ଉଦନ୍ତ ନରତ ଅନାମିକା କର ଲକ୍ଷ୍ୟ ।
ସତସଙ୍ଗେ ଥିଲେ ଅନାମିକା ପାଇ ନାଶଇ ଜନମଭକ୍ଷ୍ୟ । ୭୮ ।
ସାନ ବଡ଼ ସମସର ସେ ଭୂମିରେ ମାନ୍ୟ ତହିଁ ନାହିଁ ଯହିଁ ।
ସକଳ ବଅର୍ଥ ହୁଏ ବ୍ରଜସୁତ ଭେଦ କଲେ ଏକା ତହିଁ । ୭୯ ।
କର୍ମୀ ଆଗେ ଏହା ଗୁପତ କରିବୁ ପଣ୍ଡିତେ ନ କର ବ୍ୟକ୍ତ ।
ଗୁରୁ ଶିଷ୍ୟ ସମସର ଯେଉଁ ଠାରେ ସେଠାରେ କର ଭକତ ।୮୦।
ଶୁଣ ରାମଚନ୍ଦ୍ର ବେଦର ବୃତ୍ତାନ୍ତ ତତ୍ତ୍ୱ ନ ଜାଣନ୍ତି କେହି ।
ବେଦ ମଧ୍ୟେ ତତ୍ତ୍ୱ ଗୁପତେ ରହିଛି ଶୁଣ ତୁ ହୋ ପୁଣ୍ୟଦେହୀ ॥
ତତ୍ତ୍ୱ ବୋଲି ଯାହା ପୁରାଣେ ବୋଲନ୍ତି ଅଟଇ ଶ୍ରୀହରି ନାମ ।
ସେ ନାମ ଜଗତେ ପୂରିଣ ଅଛଇ ଚହିଲେ ବିନାଶ ତମ । ୮୧ ।
ପ୍ରଥମେ ସି ସାମବେଦ ଯେ ଅଟଇ ନାମ ତତ୍ତ୍ୱ ତହିଁ ପୂରି ।
ଅଣାକାରବ୍ରହ୍ମ ତହିଁରେ ଲୁଚନ୍ତି ଯୋଗ ମାୟାକୁ ଆବୋରି ।୮୩।
ଧୀଇ ଯଜୁର୍ବେଦ ଅନାମିକାଭେଦ ଯୋଗମାୟା ଲୁଗୁଇଛି ।
ଅରୂପାନନ୍ଦର ରସ୍ମୁକାର ଅଙ୍ଗେ ଅଲେଖେଗଣ ଅଭ୍ୟାସୁଛି । ୮୪ ।
ଏମନ୍ତେ ଭେଦ କେ ଜାଣିହିଁ ପାରଇ ନ ଜାଣି ତାର ନଅତ ।
ବ୍ୟାସମୁନ ଯାହା ଭେଦ ନ ପାଇଲେ ଅନ୍ୟ କେ ଜାଣେ ତଦନ୍ତ ॥
ବେଦ ଅନ୍ତେ ଅଣକାର ବଜେ ଦେଖ ତାହା ପଢ଼ାଇଲେ ଗୁରୁ ।
କର୍ମେ ପଡ଼ ମନୁଷ୍ୟେ ବଣାହେଲେ ଓଝ ନ ଭେଦବା ଠାରୁ ।୮୬
ଏଣୁ କର ତତ୍ତ୍ୱେ ତତପର ଗୁରୁ ପାଦେ ଚିତ୍ତ ସେବ ହାଦେ ।
ତନମନ ଦାସ ଧନ ସମର୍ପିଣ ନରତେ ଖଟିବୁ ପାଦେ । ୮୭ ।
ତେବେ ପାଇବୁ ବ୍ରହ୍ମର ତତ୍ତ୍ୱଭେଦ କୋଟିଜନ୍ମ ପାପ ନାଶ ।
ଦମ୍ଭ କପଟ ଥିଲେ କ୍ଳେଶ ପାଇବୁ ଅନନ୍ତ କୁମ୍ଭୀପାକେ ବାସ ।୮୮ ।
ରାମଚନ୍ଦ୍ର ଦାସ ଶ୍ରୀ ଗୁରୁଚରଣେ କୋଟିଏ ବିନତି କରି ।
ଅପ୍ରାଧ ମୋହର ଛେଦିବ ଗୋସାଇଁ କାନ୍ଦେ ବେନପାଦ ଧରି ॥
ରାମର ବିନତ ଦେଖିଣ ଅଚ୍ୟୁତ ବୋଲନ୍ତି ଶୁଣରେ ବାବୁ ।
ତୋଠାରେ ମନର ସଂଶୟ ଯେ ନାହିଁ କହିବା ମହିମା ସବୁ ।୯୦।
ପ୍ରଥମେ ଅଣଅକ୍ଷର କହିଦେବା ଶ୍ରୀକୃଷ୍ଣ ଶ୍ରୀମୁଖ ବାଣୀ ।

ଶ୍ରୀକୃଷ୍ଣଭଣ୍ଡାରୁ ଥୋକାଏ କହିବା ଗୁପତେ ରଖିବୁ ପୁଣି । ୯୧ ।
ତରକ ତେରଥା ଆଗେ ନ କହିବୁ କହିଲେ ଶାପ ପାଇବୁ ।
ଉତ୍ତମ ଭୂମିରେ ବିହନ ବୁଣିଲେ ସୁଖେଣ ସିନା ଦାଇବୁ । ୯୨ ।
ମରୁଡ଼ି ଭୂମିରେ ବିହନ ବୁଡ଼ିବ ଲାଭ ତହିଁ କାହିଁ ପାଇଁ ।
ଦାମ୍ଭିକ ଆଗେ ତୁ କେବେ ନ କହିବୁ ମୂଳ ଧନ ବୁଡ଼ି ଯାଇ । ୯୩ ।
ଶୁଣ ବ୍ରଜସୁତ ଅନାମ ବୃତ୍ତାନ୍ତ ତୋ ଆଗେ କହିବା ଫେଇ ।
ଯେଉଁ ନାମ ଜାଣି କୋଟି ଯୁଗେ ହର ପଲକ ମାସକେ ନେଇ ॥
ସେହୁ ସର୍ବ ମୂଳ ଅକ୍ଷରେ ମୂଳ ବେଦର ତତ୍ତ୍ୱଟି ସେହୁ ।
ନବ ବ୍ୟାକରଣ ଷଡ଼ସ୍ମୃତ ଆଦି ବର୍ଣ୍ଣିନା ହୁଅଇ ଯେହୁ । ୯୪ ।
ପ୍ରଥମ ଶବଦ ଅନାହତ ନାଦ ବିନ୍ଦୁରୂପରେ ପ୍ରକାଶ ।
ଚନ୍ଦ୍ରଅନ୍ତେ ଦଣ୍ଡ ତହିଁ ପାଶେ ବିନ୍ଦୁ ତାର ଉଦେ ତହିଁ ପାଶ । ୯୫ ।
ତହିଁ ପାଶେ ରେଖା ଉଦିତ ହୋଇଛି ପଞ୍ଚଆତ୍ମା ତତ୍ତ୍ୱେ ମିଶି ।
ଏମନ୍ତେଣ ଅଣାକାର ବେଦ ଅନ୍ତେ ଉଦସ୍ତ ହୋଇଣ ବସି । ୯୬ ।
କେ ଭେଦ ପାରିବ ଅଣାକାରବ୍ରହ୍ମ ମୂଳେ ହୋଇଛି ପ୍ରକାଶ ।
ଠାବକର କିଛି ତୋ ଆଗେ କହିବା ଶୁଣ ତୁ ହୋ ରାମଦାସ । ୯୭ ।
ଆକାର ଉକାର ଏକାର ଯେମନେଣ ନାଦ ବିନ୍ଦୁ ଓଁକାରାଦି ।
ଏମନ୍ତେଣ ଅନାମିକା ଯେ ଉଦସ୍ତ ଅବାଙ୍ଗ ଭେଦକୁ ଭେଦି । ୯୮ ।
ଏ ନାମ ଜଗତେ ଯୁଗତେ ପୂରିଛି ଯେ ଯେଉଁ ପ୍ରକାର ଘଟ ।
ଯୁଗତ କର ଯାଗିଲେ ଏହି ନାମ ଶବଦ ହେବ ପ୍ରକଟ । ୧୦୦ ।
ଏହି ନାମରେ ଜଗତ ଆଦ୍ୟପାନ୍ତ ଜଗତ ହୋଇଛି ଏଣୁ ।
ଯୋଗମାୟା ପରେ ଅଣାକାର ଉଦେ ହୋଇଣ ଅଛଇ ତେଣୁ ॥
ହରେ ରାମକୃଷ୍ଣ ଶ୍ୟାମ ଆଦ୍ୟକର ଏହି ନାମରୁ ପ୍ରକାଶ ।
ପଞ୍ଚଭୂତ ପଞ୍ଚବୀଜ ଆତ୍ମାଯେନ ଏହିଠାବରୁ ନିବାସ । ୧୦୨ ।
ଏଥୁ ସୁସିଦ୍ଧାନ୍ତ ଅଟେ ଯୋଗମତ ତାହା କହିଦେବା ଶୁଣ ।
ଯେ ଯେଉଁ ପ୍ରକାରେ ଆତ୍ମା ଲକ୍ଷ୍ୟେ ଧରେ ପ୍ରମାଣ ଅଟେ ସେ ପୁଣ ॥
ଆଗ ପଛ ଯେହ୍ନେ ସମୁଦ୍ର ଲହରୀ କୂଳକୁ ପ୍ରବେଶ ଆସି ।
ଆହୁର ଦୃଷ୍ଟାନ୍ତ କହିବା ତୋ ଆଗେ ଶୁଣ ତୁ ହୋ ଗୋପଶିଶି ॥

ସମ୍ପୂର୍ଣ୍ଣ ଲକ୍ଷ୍ୟ କୁଳକୁ ପ୍ରବେଶ ମଧ୍ୟରୁ କେ ଭାଙ୍ଗି ଯାଇ ।
ଯେସନ ତତ୍ତ୍ୱ ନ ପାଇଲେ ବ୍ରହ୍ମ ଯେ ନାକଠୁ ଦୂରକୁ ଯାଇ । ୧୦୪
ଗୀତା ଭାଗବତ ପୁରାଣ ପଢ଼ିବା କହିବା ଶୁଣିବା ଥିବ ।
ତତ୍ତ୍ୱ ଅଣାକାର ନାମ ବ୍ରହ୍ମଭେଦ ନ ପାଇ ବ୍ୟର୍ଥ ହେବ । ୧୦୬।
ତୁ ଅବା ବୋଲିବୁ ସବୁଠାରେ ବ୍ରହ୍ମ ବ୍ୟର୍ଥ କପାଇଁ ଗଲା ।
ଜଗତ ଯାକରେ ଅଣାକାର ବ୍ରହ୍ମ ପୂରଣ ଅଛଇ ଭଲା । ୧୦୭ ।
ତତ୍ତ୍ୱ ପାଇଲେ ଅନ୍ଧକାର ଫିଟିବ ସଂସାର ହୋଇବ କାହିଁ ।
ତେଣୁକରି ଯୋଗୀ ତପ ସାଧୁଛନ୍ତି କୋଟିକଲେ ଭେଟ ନାହିଁ ॥
ଦେଖ ଭଗବାନ ନାମକୁ ଯେ ଧ୍ରୁବ ତତ୍ତ୍ୱମନରେ ଧଇଲା ।
ଅଳପବୟସେ ଅନୁଭବ କାଟିଣ ଅଲେଖ ପୁରରେ ରହିଲା । ୧୦୯ ।
ସାତକଳ୍ପ ଋଷି ମାର୍କଣ୍ଡ ତପସି ସର ନୋହିଲେ ତାହାଙ୍କୁ ।
ତତ୍ତ୍ୱବୋଲି ଶାସ୍ତ୍ରେ ବୋଲନ୍ତି ଯାହାକୁ ନାମବ୍ରହ୍ମ ବୋଲି ତାଙ୍କୁ ।୧୧୦।
ସଂସାରରେ ତତ୍ତ୍ୱ ଉପଖ୍ୟାତ ହେଲେ କୃତାନ୍ତ ସଜନ ଯିବ ।
ମରିବା ଜନ୍ମିବା ଦେବନ ପଥକୁ ଯେ ଭଯ ଆଉ କପାଥିବ । ୧୧୧।
ଏଣୁକରି ଗୁରୁ ଭଣ୍ଡାର ତତ୍ତ୍ୱ ଯେ ଗୁପତ ହୋଇଣ ଅଛି ।
ତମଭ୍ରମ ମୋହ ମୁଁକାର ପଗିଆ କେ ଅଣା ତହିଁକ ଗଛି । ୧୧୨ ।
ଶୁଣ ବ୍ରଜସୁତ କହିବା ଚରିତ ଯେମନ୍ତ ପାତଛି ଛନ୍ଦ ।
ଅକ୍ଷରେ ଜଗତ ବ୍ୟାପିଣ ଅଛଇ ଶୂନ୍ୟରେ ପାତଛି ବନ୍ଧ । ୧୧୩ ।
ଅନାମରୁ ନାମ ଜନମ ହୋଇଣ ପ୍ରଣବକୁ କଲା ମୂଳ
ପଞ୍ଚ ବୀଜ ସଙ୍ଗେ ପରେ ହୋଇଲେ ହେବୁ ଅଣାକାରେ ତୁଲ ।୧୧୪।
ଆକାରଟି ହରେ ହର ଅଂ ବୀଜରେ ହକାର ଏ ବୀଜ ହେଳ ।
ଜନ ଦେବନ ପ୍ରେମ ଷୋଡ଼ଶ ରୂପେଣ ପ୍ରଣବେ କୁଣ୍ଡଳି ବୁଝ । ୧୧୫।
ଉକାର ସେ ରାମ ଶ୍ରୀଂ ବୀଜ ଶମ ସକାର ଏହି ବୀଜରେ ।
ଗୋପୀ ମନ୍ତ୍ରରାଜ ଦେବନ ମଧ୍ୟେ ହେଳ ତାର ଓଁକାର ଆଦ୍ୟରେ ॥
ଏକାରଟି ବିଷ୍ଣୁ କ୍ଲୀଂ ବୀଜ ବ୍ରହ୍ମ କକାରେ ଏ ବଳେ ଦେଖ ।
ଚଳିଶ୍ୱର ଆପ ଯୌବନ ଦଣ୍ଡକ ପ୍ରଣବ ମଧ୍ୟରେ ଲେଖ । ୧୧୬ ।
ଧକାରଟି ଶ୍ୟାମ ଅଟେ ହର ନାମ ଧ୍ଲୀଂ ବୀଜ ଧକାରଟି ।

ସ୍ୱାହା ମନ୍ତ୍ରରାଜ ବାଇବକୁ ହେଉ ପ୍ରଣବେ ଅର୍ଦ୍ଧକ ଯେତି । ୧୧୮ ।
ଅକାର ସେ କୃଷ୍ଣ ଶବଦ ବ୍ରହ୍ମ ସେ କ୍ଲୀଂ ବୀଜ ପ୍ରକାର ଉସେ ।
ମନ୍ତ୍ରରାଜ ସ୍ୱାହା ଅକ୍ଷର ଆକାଶ ପ୍ରଣବେ ବନ୍ଧନ ନେସେ । ୧୧୯ ।
ଓଁକାର ମଧ୍ୟ ଯେ ନାମ ବ୍ରହ୍ମ ସାଧ ମିଶିଣ ଯାଉଛି ଛନ୍ଦ ।
ଏମନ୍ତ୍ରେ ଯେ ବୀଜ ବ୍ରହ୍ମ ଏକଆତ୍ମା ଚହ୍ନିଲେ ତୁଟଇ ଧନ୍ଦ । ୧୨୦ ।
ବୀଜକୁ ଚହ୍ନିଲେ ନାମକୁ ଭେଟିବୁ ନାମେ ଅନାଦି ନିବାସ ।
ସେ ନାମ ବ୍ରହ୍ମ ଯେ ଅଟେ ଜ୍ୟୋତିବ୍ରହ୍ମ ଅନାମ ତହିଁ ପ୍ରକାଶ ।୧୨୧।
ନାମକୁ ବୋଲନ୍ତି ଜ୍ୟୋତି ବୋଲି ଜାଣ ଅନାମ ଅଟେ ଶବଦ ।
ଶବଦ ଘଟିଲେ ପ୍ରମାଦ କାଟିବୁ ପାଇବୁ ଗୋଲୋକ ଠାବ ।୧୨୨ ।
କାୟା ମଧ୍ୟେ ଶୁନ୍ୟ ଅବାଡ଼ ଜ୍ୟୋତି ଏ ଅଟନ୍ତି ସାଧନା ମୂଳ ।
ଅଣାକ୍ଷର ମନ୍ତ୍ର ତତ୍ତ୍ୱରେ ଭଜିଲେ ସକଳ ହୋଇବ ଠୂଳ । ୧୨୩ ।
ଶୁନ୍ୟ ବ୍ରହ୍ମ ଦେଖ ଉଦିତ ହୋଇଛି ହାନିଲାଭ ବୁଝିବାକୁ ।
ପରଚେ ହୋଇଲେ ବାଧା ନ ଥିବ ଯେ ଜଞ୍ଜାଳ ତୋ ସୁଝିବାକୁ ॥
କାୟା ଟଳିଗଲେ ବ୍ରହ୍ମ ସୋ ଲୁଚବ ଶୁଣ ହୋ ବ୍ରଜକୁମର ।
ଏଣୁକର ତତ୍ତ୍ୱ ଗୁରୁ ସେବାକର ଶୁନ୍ୟ ମନ୍ତ୍ରକୁ ସୁମର । ୧୨୫ ।
କାୟା ଗଲେ ଶୁନ୍ୟ ଗୋଟି ସେ ଯେ ପୁଣ କାୟାରେ ପ୍ରକାଶ ଥାଇ ।
ବ୍ରହ୍ମ ଗଲେ ଶୁନ୍ୟ କେବଣ ପ୍ରକାରେ ଶବଦରେ ପ୍ରକାଶଇ । ୧୨୬।
ଏମନ୍ତ ବୋଲିଣ ମନରେ ସଂଶୟ କରିବୁ ବ୍ରଜତନୟ ।
ବୁଝାଇ ତୋ ଆଗେ ତାହା କହି ଦେବା ଫେଡ଼ିବା ମନୁ ସଂଶୟ ॥
ଜଗତଯାକରେ ଜୀବ ସ୍ୱରୂପରେ ବ୍ରହ୍ମ ପ୍ରକାଶିଛି ଆସି ।
ଜୀବ ଗଲେ କାୟା ମୃତ୍ୟୁ ବୋଲିଣ ଯେ ଜଗତେ ନିଗମ ଭାସି ॥
ଶବଦରେ ବ୍ରହ୍ମନାମ ବିରାଜିଣ ତେଣୁ ଶୁନ ତହିଁ ଦିଶେ ।
ଏଜୀବ ସେ କାୟା ମୃତ୍ୟୁ ଗୋଟି ସେ ଯେ ବୋଲିଣ ନିଗମେ ଭାସେ॥
ସମସ୍ତଙ୍କୁ ଦୂର କରିଣ କେବଳ ଅନାମରେ କର ଠଣା ।
ସଂଶୟକୁ ଛେଦ ନାମ କୁଠାରରେ ହୋଇବ ନାଶ କଳ୍ପନା । ୧୩୦
ଅବାଡ଼ ଦେଖି ମାୟାବାଡ଼ କାଟିବୁ ଉଦାସ୍ତ ଅଛଇ ହୋଇ ।
ଭେଦ ଜନାର୍ଦ୍ଦନ ନାମ ପରଂବ୍ରହ୍ମ ଦୃଷ୍ଟି ମାନ୍ଧରେଣ ଥାଇ । ୧୩୧ ।

ଜ୍ୟୋତ ବ୍ରହ୍ମ ଦେଖ ତାଠାରେ ଉଦୟ ଦର୍ଶନେ ଦୁରିତ ନାଶ ।
ସେତ ପୀତ ନୀଳ ଲୋହିତ କୁଙ୍କୁମ ପଞ୍ଚ ବର୍ଣ୍ଣେ କରେ ବାସ ॥
ସେ ଜ୍ୟୋତି ଦର୍ଶନେ ଅନେକ କଲ୍ମଷ ଇଷତରେ ନାଶ ଯାଇ ।
ଅଣାକାରବ୍ରହ୍ମ ଆକାରରେ ମିଶି ଅବାଟ ମଧ୍ୟରେ ରହି । ୧୩୩ ।
ଏଥିପରେ ଅଣାକାରବ୍ରହ୍ମ ଉଦେ ନୁହଇ ଦୃଷ୍ଟି ଗୋଚର ।
ଶ୍ରୀଗୁରୁ କୃପାରେ ଜାଣିଣ ପାରିଲେ ଶୁଭଇ ଭ୍ରୂରୁ ମଧ୍ୟରେ ।୧୩୪ ।
ସେ ଧ୍ୱନି ଶୁଭିଲେ ସରବ ଜନ୍ମର ଜନମ ସୁଫଳ ହେବ ।
ମରିବା ଜଇବା ନିଷ୍ଠା ପ୍ରତିଷ୍ଠା ଯେ ଶୁଭ ଅଶୁଭ ନ ଥିବ । ୧୩୫ ।
ତତ୍ତ୍ୱ କରି ତୋତେ କହିଲୁ କୁମର ସାଧନା ମତ ବିଚାର ।
ସଦଗୁରୁ ସେବ ଶ୍ରୀକୃଷ୍ଣ ନାମକୁ ନିରତେ ବସି ଉଚ୍ଚାର । ୧୩୬ ।
ଆସନରେ ସିଧି ଅଧି ନାନାବିଧି ଅଙ୍ଗ ଶୁଦ୍ଧିମାନ ତ୍ୟଜ ।
ଅକର୍ମମାନ କରିଥିଲେ ତରିଇ ସେ ନାମବ୍ରହ୍ମକୁ ଭଜ । ୧୩୭ ।
ଏଥୁଁ ଆନମତ ଯେତେ ଭ୍ରମ ଚିତ୍ତ କହିଲୁଁ ତୋ ଆଗେ ଫେଡ଼ି ।
ଏହି ସ୍ୱବରେଣ ଅନ୍ଧକାର ନାଶ ଅଥିଲେ ନ ମରି ବୁଡ଼ି । ୧୩୮ ।
ଲକ୍ଷେକ ଗ୍ରନ୍ଥରେ ଏ ଗ୍ରନ୍ଥଟି ସାର କହିଲୁଁ ବ୍ରଜକୁମର ।
ଶୋଳକ ସ୍ତୁତି ପଦ୍ୟ ଗଦ୍ୟାବଳି ଅଛଇ ଏଥିଭିତର । ୧୩୯ ।
ରାମଚନ୍ଦ୍ର ଦାସ ବୋଲଇ ଦେବଦେବ ପରମବ୍ରହ୍ମ ଗୋସାଇଁ ।
ସେ ନାମ ବ୍ରହ୍ମର ଭଜନ କେମନ୍ତେ କହିବ ମୋତେ ବୁଝାଇ ।
କେଉଁଠାରେ ଉଦେ କେଉଁ ମାର୍ଗ ଦେଇ କେଉଁ ସ୍ଥାନକୁ ଚଳଇ
କେମନ୍ତ ପ୍ରକାରେ ଭଜିଲେ ତାହାକୁ ଶବଦ ବ୍ରହ୍ମେ ମିଶଇ ।୧୪୧।
ଶ୍ରୀମୁଖରୁ ଆଜ୍ଞା ହୋଇଲେ ସଂଶୟ ମୋ ମନୁ ହେବ ବିନାଶ ।
ଶ୍ରୀଗୁରୁ ଚରଣେ ଦଣ୍ଡବତ କରି ପଚାରଇ ରାମଦାସ । ୧୪୨ ।
ବୋଲନ୍ତି ଶ୍ରୀଗୁରୁ ଶୁଣ ବ୍ରଜସୁତ ଅଣଅକ୍ଷର ଭଜନ ।
ସତ ତତ୍ତ୍ୱ ନାମ ତୋ ଆଗେ କହିବା ଶ୍ରୀଗୁରୁ ଭଣ୍ଡାର ଧନ । ୧୪୩
ଅଭୂତରୁ ନାମ ପ୍ରକାଶ ହୋଇଣ ଅନାଦି କୋଳରେ ରହି ।
ଆଦିମୂଳ ଏକ କରିଣ ବାନ୍ଧିଲେ ଓଁହ୍ରୋଁ ସ୍ୱରର ନାମ ଥାଇ ॥
ସେ ନାମ ଅକାର ଧ୍ୱନି ଅନାହତ ନାଦ ଅଭ୍ୟନ୍ତରେ ମିଶେ । !

ପଶଇ ମିଶଇ ଯାଇଣ ଆଗର ସମୁଦ୍ର ଲହରୀ କି ସେ । ୧୪୬ ।
ଏମନ୍ତେ ଦ୍ୱାଦଶ ସପତ ସ୍ୱରରେ ଆତଯାତ ହୋଇ ରହେ ।
ଶ୍ରୀଗୁରୁ ଭଣ୍ଡାର ଅମୂଲ୍ୟ ଏ ଧନ ଅନାମିକା ବୋଲି କହେ ॥
ଗୁପତହିଁ କର ମନୁ ତାପହର ତୋ ଆଗେ କହିଲୁ ଫେଇ ।
ତୁ ଯେଣୁ ଆମ୍ଭର ବିଶ୍ୱାସଭକତ ଅଣକ୍ଷର ହେଲୁ କହି । ୧୪୭ ।
ନାନା ପାତକ କରଥିଲେ ତରଇ ନାମର ଏଡ଼େ ମହିମା ।
ନାମ ଭଜ ନଷ୍ଟେ ଇଷିତେ ତରିବୁ ଯମ ଯାତନା ବର୍ଜମା । ୧୪୮ ।
ଏଥିପରେ ଆଉ ଯେ ଅବା କହିବ ତା ପାଦେ ଶରଣ ମୋର ।
ପାମର ଅଚ୍ୟୁତ ରାମଚନ୍ଦ୍ର ଆଗେ କହେ ବ୍ରହ୍ମତତ୍ତ୍ୱ ସାର । ୧୪୯ ।
ଯେତେକ ଶାସ୍ତ୍ର ପଢ଼ିବୁ ବ୍ରଜ ସୁତ ସବୁ ଏଥିର ଭିତରେ ।
ସିଦ୍ଧାନ୍ତ ଯୋଗାନ୍ତ ବେଦାନ୍ତ ବିଧିମତ କହିଲୁ ତୋର ଆଗରେ ॥
ଅଳପ ଶାସ୍ତ୍ର ବୋଲିଣ ମନରେ ନ କର ଶ୍ରୀକୃଷ୍ଣ ଦାସ ।
ଅତି ବଡ଼ ମତ୍ତ ହସ୍ତୀକୁ ଆବୃତ କରଇ ଯେହ୍ନେ ଆଙ୍କୁଶ । ୧୫୧ ।
ଏ ଗ୍ରନ୍ଥ ଗୁପତ କରିଣ ରଖିବୁ କହିଲେ ପାଇବୁ ଖେଦ ।
କୃଷ୍ଣ ଭକ୍ତ ଉଦେ ହୋଇଲା ବେଳକୁ ପାଇବେ ଏଥିର ଭେଦ ॥
ପାମର ଅଚ୍ୟୁତ ଶ୍ରୀକୃଷ୍ଣଙ୍କ ଭୃତ୍ୟ ଶ୍ରୀହରି କରୁଣା ଯେଣୁ ।
ନେମାଳ ଗ୍ରାମେଣ ପଦ୍ମବନ ନାମେ ନିବାସ ପାଇଲି ତେଣୁ । ୧୫୩ ।
ଚିତ୍ରୋତ୍ପଳା ନଦୀ ଉତ୍ତରକୂଳରେ ଜନ୍ମେ ଜନ୍ମେଣ ନିବାସ ।
ଶ୍ରୀହରି ଚରଣେ ଶରଣ ପଶିଲା ପାମର ଅଚ୍ୟୁତ ଦାସ । ୧୫୪ ।
ରାମଦାସ ମନେ ହରଷ ହୋଇଣ ସଂଶୟ ମନୁ ତେଜିଲା ।
ପୂଜାବିଧି କରି ଶ୍ରୀଗୁରୁଚରଣେ ଅଣଅକ୍ଷର ଭଜିଲା । ୧୫୫ ।
ଅଣଅକ୍ଷର ଏ ଶ୍ରୀ ବ୍ରହ୍ମ ସଂହିତା ଗ୍ରନ୍ଥମାନଙ୍କରେ ସାର ।
ଶ୍ରୀକୃଷ୍ଣ ଚରଣେ ଶରଣ ପଶିଲା ଜନ ଅଚ୍ୟୁତ ପାମର । ୧୫୬ ।
ଛତିଶ ସଂହିତା ଅଠସ୍ତରି ଗୀତା ବସାଂନ୍ତି ସପ୍ତବଂଶରେ ।
ଉପବଂଶାଂନ୍ତି ଦ୍ୱାଦଶ ଖଣ୍ଡ ଯେନ ଭବିଷ୍ୟ ଶତ ଖଣ୍ଡରେ । ୧୫୭ ।
ପଦ ପଦ୍ୟାବଳି ଲକ୍ଷେ ଯେ ଗ୍ରନ୍ଥ ସବୁ ଶ୍ରୀ କୃଷ୍ଣ ମହିମା ।
ତୋ ଆଗେ କହିଲୁଁ ବରଜକୁମାର ବ୍ରହ୍ମ ସାକ୍ଷୀ ସୀମା । ୧୫୮

ଏ ଗ୍ରନ୍ଥ ଗୁପତ କରଣ ରଖିଲୁଁ ବେଳକୁ ହେବ ପ୍ରକାଶ ।
ଶ୍ରୀକୃଷ୍ଣ ଚରଣେ ଶରଣ ପଶିଲା ପାମର ଅଚ୍ୟୁତ ଦାସ । ୧୫୯ ।
ବ୍ରଜକୁଳ ତାର ଆପଣେ ତରବ ଶ୍ରୀକୃଷ୍ଣ ଆଜ୍ଞା ହୋଇଛି ।
ଅବ୍ୟକତ ହୋଇ ଅଣାକାର ଘରୁ ତେଣୁ ପଦ ଝରୁଅଛି । ୧୬୦ ।
ସାଧୁ ଜନମାନେ ଦୋଷ ମୋ ନ ଧର ଶ୍ରୀକୃଷ୍ଣ ଭକତି ହେଉ ।
ପାମର ଅଚ୍ୟୁତ ଅଣାକାର ଭଜ ଶ୍ରୀକୃଷ୍ଣ ଚରଣେ ରହୁ । ୧୬୧ ।
ବ୍ରହ୍ମ ଉପଦେଶେ ପାଇ ରାମଦାସ ଆନନ୍ଦେ ହେଲା ହରଷ ।
ଅଣାକାର ବ୍ରହ୍ମ ସଂହିତା ଭଣଇ ପାମର ଅଚ୍ୟୁତଦାସ । ୧୬୨ ।

ଇତି ଶ୍ରୀଅଣାକାର ସଂହିତା ସଦାଜପ୍ୟେ ସମ୍ପୂର୍ଣ୍ଣ ।



ସମାପ୍ତ ।

Printed by B. S. Das, Mukur Press Cuttack.

## ୧ମ କଳ୍ପ

ଘଟେ = ଶରୀରରେ — ଅଣୀକାରବ୍ରହ୍ମ ପ୍ରକୃତିର ଉପରେ ଅବସ୍ଥିତ ତାଙ୍କର ଛାୟା ସମସ୍ତ ପ୍ରକୃତିର ଶରୀରରେ ଦେଖା ଯାଉଅଛି ।

କାମ ଆଶ୍ରିତେ = ଫଳବାଞ୍ଛା କରି ।

ସୁର = ଦେବତା ।

ନିଜବୃତ୍ତି = ନିଜର ସ୍ୱରୂପ—ବ୍ରହ୍ମତ୍ୱ ।

ଅନନ୍ତ ଅବ୍ୟକ୍ତ ବେହାରୀ = ଶୂନ୍ୟରେ ବିହାର କରି ।

ନିଷ୍କାମ = କାମନା (ଫଳବାଞ୍ଛା) ରହିତ ।

ନିର୍ବେଦ = ବେଦ କର୍ମ ଶିକ୍ଷାଦିଏ । ସେହିକର୍ମ (ଫଳଜଡ଼ିତ) ଶୂନ୍ୟ

ବ୍ରହ୍ମପରେ = ବ୍ରହ୍ମଙ୍କୁ ଜାଣିବାପାଇଁ ।

ଉକଟେ = ପ୍ରକାଶ ହୁଅନ୍ତେ ।

ପିତାମହ = ବ୍ରହ୍ମା ( ବ୍ରହ୍ମାଙ୍କର ମାନସ ପୁତ୍ର ବଶିଷ୍ଠ = ସ୍ଥିରମନ )

ପ୍ରଚଣ୍ଡ = ଗୋଟିଏ କାକ ଚୈତନ୍ୟ (ତ୍ରିକାଳ ଦର୍ଶୀ)

ସିଦ୍ଧାଙ୍ଗ = ସିଦ୍ଧପୁରୁଷ ହେବାର ପ୍ରକାଶ ହୋଇଅଛି ।

ଶୁକ୍ଳାମ୍ବର = ଶୁଦ୍ଧ ସତ୍ତ୍ୱମନ୍ଦ୍ର ।

କଳ୍ପବୃକ୍ଷ = ଗୋଲୋକର ବାହାରେ ଥିବା ବୃକ୍ଷ ( ତାକୁ କହି କଳ୍ପବଟ ) ତାକୁ । ବ, ଗୀ ।

ଟୁଟି = କ୍ଳାନ୍ତ ହୋଇ ।

ସେ ବ୍ରହ୍ମଜ୍ଞାନର······ସବୁକଥା = ମନର ସ୍ଥିରତାରେ ବ୍ରହ୍ମଜ୍ଞାନ ଲଭି ହୁଏ "ଯଦି ଏ ମନ ସୁଗତିକି ପାଇ ବନ୍ଧନନାଶ ମୋକ୍ଷଗତି ପାଇ ।" ଗୁରୁଜ୍ଞାନ ।

ସମ୍ଭାର = ଆୟୋଜନ, ଯୋଗାଡ଼ ।

ଏ ସବି ଧର୍ମ = ··ଗଛି = ବେଦ ସଂସାରର ସ୍ଥିତି ପାଇ କର୍ମର ଉପଦେଶ ଦେଇଥାଏ କିନ୍ତୁ ସେ ସବୁ କର୍ମଦ୍ୱାରା ବ୍ରହ୍ମର ଉପଲବ୍ଧି ହୁଏନାହିଁ ।

କାମ କର୍ମ୍ମ···—ଫଳ କାମନା କରି କାର୍ଯ୍ୟ କଲେ ମୁକ୍ତିଲାଭ ହୁଏ ନାହିଁ । ସେ କାର୍ଯ୍ୟମାନଙ୍କଦ୍ୱାରା ଯେଉଁ ସ୍ୱର୍ଗ ବା ନରକ ଲାଭହୁଏ—ତାହା ଅଳ୍ପଦିନ ରହେ । କାର୍ଯ୍ୟର ଫଳ ଶେଷହେଲେ ପୁଣି ସଂସାରରେ ଜନ୍ମି ଧନ୍ଦା ହେବାକୁ ହୁଏ ।

ଆତ୍ମାଗତ = ଆତ୍ମତନ୍ତ୍ର

ଅକର୍ମ୍ମ = ଫଳକାମନାଶୂନ୍ୟ କର୍ମ୍ମ

ଧନ = ଧନ୍ୟ ।

ପ୍ରସନ୍ନ = ପ୍ରସନ୍ନତା

ଅଣାକ୍ଷର = ଅରୂପ ଅଣାକାର (ଅକ୍ଷର = ପ୍ରଣବାତ୍ମକ, ରୂପଯୁକ୍ତ)

ରାଉ ବାଉ = ଶବ୍ଦ ବ୍ରହ୍ମ ।

ମ ଅକ୍ଷର = ଉପାଧି ବିଶିଷ୍ଟ ଆତ୍ମା = ଜୀବ ବା ରୂପ

ମ ର ଶବ୍ଦେ ମିଳାଇ = ପରମରେ ଜୀବକୁ ଲୀନ କରି ବା ରୂପକୁ ଅରୂପରେ ମିଳାଇ ।

ମହବାଠାରେ··· = ନିଶ୍ଚଳଭାବରେ—ସମାଧିରେ ମନ ରଖି

ର = ଅଣାକାର = ଅରୂପ ।

ମ = ସରୂପ ।

ଓଁକାର = ସଗୁଣ

ପାଦ = ବ୍ରହ୍ମପାଦ ।

ଅପାନ = ଗୁହ୍ୟବାୟୁ

ପ୍ରାଣ = ହୃଦସ୍ଥ ”

ସମାନ = ନାଭି ”

ଉଦାନ = କଣ୍ଠ ”

ହୃଦି ପ୍ରାଣଃ ସ୍ଥିତୋ ନିତ୍ୟ
ମପାନୋ ଗୁଦମଣ୍ଡଳେ ।
ସମାନୋ ନାଭିଦେଶେ ତୁ
ଉଦାନଃ କଣ୍ଠମଧ୍ୟଗଃ ।
ବ୍ୟାନଃ ସର୍ବଶରୀରେ ତୁ
ପ୍ରଧାନାଃ ପଞ୍ଚବାୟବଃ ।

ବ୍ୟାନ = ଆକାଶ (ବ୍ରହ୍ମରନ୍ଧ୍ର) ର ବାୟୁ = ସର୍ବଶରୀରରେ ବ୍ୟାପିଥାଏ ।

ଧର=ବାୟୁକୁ ଉପରକୁ ଟୋଳ ।

ଇଡ଼ା ଭଗବତୀ ଗଙ୍ଗା ପିଙ୍ଗଳା ଯମୁନା ନଦୀ
ଇଡ଼ା ପିଙ୍ଗଳୟୋ ମଧ୍ୟେ ସୁଷୁମ୍ନା ଚ ସରସ୍ୱତୀ ।
ତନ୍ତ୍ରସାର

ତ୍ରିବେଣୀ=ଇଡ଼ା ପିଙ୍ଗଳା ସୁଷୁମ୍ନା ତନନାଡ଼ (ଯମୁନା ବାମନାସା ବାଇ, ଦକ୍ଷିଣ ପୁଡ଼ା ଗଙ୍ଗା ହୋଇ । ଏଥି ମଧ୍ୟରେ ସରସ୍ୱତୀ —ଏମନ୍ତେ ତ୍ରୟ ବଙ୍କନାଳର ଶିରପରେ ନଦୀ-ସ୍ଥିତ (ବ, ଗୀ)=ନାହିକା ରନ୍ଧ୍ରର ମୂଳଶିଖ=ତ୍ରିକୂଟ । "କପାଳ ବାଙ୍କୁନାଳ ହୋଇ ।" ବ, ଗୀ,

କମାରଶାଳ=ତ୍ରିକୂଟ=ଅର୍ଦ୍ଧମାତ୍ରାର ଉପର ସ୍ଥାନରେ ।

ଠଣା=ସ୍ଥାନ, ବାସ

ମହାଶୂନ୍ୟ=ତାଳୁ ( ତାଳୁକୁକହ ମହାଶୂନ୍ୟ, ବ, ଗୀ ) ମଧ୍ୟସ୍ଥିତ ମହାକାଶ ।

ସୁରସିଦ୍ଧଙ୍କୁ=ଦେବତା ଓ ସିଦ୍ଧଲୋକମାନଙ୍କୁ ।

ଅଦୃଷ୍ଟି ଭୂମି=ଦୃଷ୍ଟିର ଅଗୋଚର ଭୂମି=ଭ୍ରୂଲତା=ଆଖିଟେକ ।

ଅଟୋଳ=ପ୍ରଶ୍ୱାସ ପବନକୁ

ଟୋଳ=ରୋଧ କର, ଟେକ ।

ଅମିୟ ସୁଧା=ଜିହ୍ୱାମୂଳରୁ କ୍ଷରୁଥିବା ।

ଅମାପ=ବାୟୁକୁ ସଂଯମ କରିବା ।

ଅଭକ୍ଷ୍ୟ ଦ୍ରବ୍ୟ=ପ୍ରଶ୍ୱାସ ପବନ ।



## ୬ଷ୍ଠ କଳ୍ପ ।

ଅଷ୍ଟାଙ୍ଗ ଯୋଗ=ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର ଧାରଣା ଏବଂ ଧ୍ୟାନ ।

ଶବଦକୁ=ନାଦକୁ ତତାରେ ରଖି । ଅବ୍ୟକ୍ତ ଧ୍ୱନି । ମନ ନିର୍ବିଷୟ ହେଲେ ଧ୍ୟାନାବସ୍ଥାରେ, ଅବ୍ୟକ୍ତ ଶବ୍ଦମାନ ଶୁଣାଯାଏ —

।

ଯଥା— ଜଳଧି, ଜୀମୂତ, ଭେରୀ, ନିର୍ଝର, ମର୍ଦ୍ଦଳ, କାହାଳ ଇତ୍ୟାଦି । ବ୍ରହ୍ମ ଓ ପ୍ରଣବର ସନ୍ଧିସ୍ଥଳ ଏବଂ ତାହା ଜ୍ୟୋତିର୍ମୟ ।

ଲୟାଙ୍ଗେ—ମନ ଯେଉଁଠାରେ ଲୟ ହୁଏ—ତାହାହିଁ ଆତ୍ମାର ସ୍ଥାନ, ଯେଉଁଠାରେ ଶବ୍ଦ ପ୍ରବର୍ତ୍ତିତ ହେଉଥିବାରୁ—ତାହା ଆକାଶ ରୂପ । କିନ୍ତୁ ସମୟ ପରେ ସେ ଶବ୍ଦ ଶୁଣାଯାଏ ନାହିଁ । ତହିଁର ପରେ ନିଃଶବ୍ଦ ସ୍ଥାନରେ ପ୍ରବେଶ କଲେ ମହାକାଶ ସ୍ୱରୂପ ସ୍ଥାନ ମିଳେ । ତାହାହିଁ ପରମାତ୍ମାର ଘର ପରବ୍ରହ୍ମ ସେ ଅବସ୍ଥା ଲାଭକଲେ ମୁକ୍ତାବସ୍ଥା ଲାଭ ହୁଏ ।

ନିୟାମନସମର୍ଥୋଽୟଂ ନିନାଦୋ ନିଶିତାଙ୍କୁଶଃ ।
ନାଦୋଽନ୍ତରଙ୍ଗ ସାରଙ୍ଗ ବନ୍ଧନେ ବାଗୁରାୟତେ ।
ଅନ୍ତରଙ୍ଗସମୁଦ୍ରସ୍ୟ ରୋଧେ ବେଳାୟତେଽପିବା ।
ବ୍ରହ୍ମପ୍ରଣବସଂଲଗ୍ନ—ନାଦୋ ଜ୍ୟୋତିର୍ମୟାତ୍ମକଃ ।
ମନସ୍ତତ୍ର ଲୟଂ ଯାତି ତଦ୍ବିଷ୍ଣୋଃ ପରମଂ ପଦମ୍ ।
ତାବଦାକାଶସଂକଳ୍ପୋ ଯାବଚ୍ଛବ୍ଦଃ ପ୍ରବର୍ତ୍ତତେ ।
ନିଃଶବ୍ଦଂ ତତ୍ପରଂ ବ୍ରହ୍ମ ପରମାତ୍ମା ସମୀୟତେ ।
ନାଦୋ ଯାବନ୍ମନ ସ୍ତାବନ୍ନାଦାନ୍ତେଽପି ମନୋନ୍ମନୀ ।
ସଶବ୍ଦ ଶ୍ଚାକ୍ଷରେ କ୍ଷୀଣେ ନିଃଶବ୍ଦଂ ପରମଂ ପଦମ୍ ।
ସଦା ନାଦାନୁସନ୍ଧାନାତ୍ ସା କ୍ଷୀଣା ବାସନା ତୁ ଯା ।
ନିରଞ୍ଜନେ ବିଲୀୟେତେ ମନୋବାୟୂ ନ ସଂଶୟଃ ।
ନାଦକୋଟି ସହସ୍ରାଣି ବିନ୍ଦୁକୋଟିଶତାନିଚ ।
ସର୍ବେ ତତ୍ର ଲୟଂ ଯାନ୍ତି ବ୍ରହ୍ମପ୍ରଣବନାଦକେ ।
ସର୍ବାବସ୍ଥାବିନିର୍ମୁକ୍ତଃ ସର୍ବଚିନ୍ତାବିବର୍ଜ୍ଜିତଃ ।
ମୃତବତ୍ତିଷ୍ଠତେ ଯୋଗୀ ସ ମୁକ୍ତୋ ନାତ୍ର ସଂଶୟଃ ।
ଶଙ୍ଖ ଦୁନ୍ଦୁଭିନାଦଂ ଚ ନ ଶୃଣୋତି କଦାଚନ ।

ନାଦବିନ୍ଦୂପନିଷଦ୍

ଦିବାନିଶି=ବାଆଁ ଓ ଡାହାଣ ପୁଡ଼ାର ବାୟୁ ମିଳି ଏକହୋଇ ।
ଅମନ ସୂନରେ=ଶୂନ୍ୟ—ବନ୍ଧୁ ଘରରେ—ଆକାଶରେ ମନ ଓ ବାୟୁ ଲୀନ ହୁଏ ।
ସେ ପାଦ=ବ୍ରହ୍ମସ୍ଥାନ—ମହାକାଶ ବର୍ଣ୍ଣଶୂନ୍ୟ ଓ ଚିହ୍ନଶୂନ୍ୟ ଓ
ସୁମନ=ମନର ବିଷୟ ବାସନା କ୍ଷୀଣାବସ୍ଥା । ମନ ବାସନା ଶୂନ୍ୟ ନିଶ୍ଚଳ ହୋଇ । ସୁମନଃପବନାରୁଢ଼ଃ ସରଜୋ ନିର୍ଗୁଣସ୍ତଥା—ବ୍ରହ୍ମବିନ୍ଦୋପନିଷଦ୍ ।
ଚେତାଦ୍ୱାରେ···=ଚିନ୍ମୟ ପରଂବ୍ରହ୍ମର ଦ୍ୱାର ରଖି ।
ପବନକୁ=ନାସାବାୟୁ ଉପରକୁ ଉଠାଇ ।
ତ୍ରିକୂଟ=ଇଡ଼ା ପିଙ୍ଗଳା ଓ ସୁଷୁମ୍ନାର ମିଳନ ସ୍ଥାନ ।
ସେବାତ···=ପ୍ରଶ୍ୱାସ ଉପରକୁ ଉଠିଲେ ।
ରାଜଦଣ୍ଡ ପଥ=ବ୍ରହ୍ମରନ୍ଧ୍ରକୁ ପଥ ।
ପରମ ସଙ୍ଗେ···=ଜୀବ ନିଶ୍ୱାସବାୟୁ, ପରମ ପ୍ରଶ୍ୱାସ ବାୟୁ ନିଶ୍ୱାସ ପ୍ରଶ୍ୱାସ ସହିତ ମିଳି ଏକ ହେଲେ ତ୍ରିଗୁଣ ( ସତ୍ତ୍ୱ ରଜ ତମ ଓ ଇଡ଼ା ପିଙ୍ଗଳା ଏବଂ ସୁଷୁମ୍ନା ତିନ ନାଡ଼ିର ଲୟ )
ଅଜୟଗଡ଼=ମହାକାଶ ଲାଭ ହେବ ।
ଅଲେଖ=ଚିହ୍ନ ଶୂନ୍ୟ ।
ଶ୍ରୀରାମ=ବୁଦ୍ଧି ଆଗରେ ।
ବିଷ୍ଣୁ ମାୟାରେ=ସକାମ କର୍ମରେ=ଧର୍ମାର୍ଥ କାମ ଲାଭ କରିବାରେ ସାଧ=ନିଜର ଅଧୀନ ।
ସଦାନନ୍ଦ=ଶିବ ।
କାଶୀ=ଶିବ ।
ତ୍ରିକୂଟରେ=କୈଳାସ=ଇଡ଼ା ପିଙ୍ଗଳା ଏବଂ ସୁଷୁମ୍ନା ମିଳନ ସ୍ଥାନରେ ଶିବ ଅଛନ୍ତି ।
ଅଣାକାର ଭକ୍ତ ହର=ଶିବ ଅଣାକାର ବ୍ରହ୍ମଙ୍କୁ ଭଜନ କରନ୍ତି
ଚେତାକୁ··=ଚିନ୍ମୟକୁ ପାଇବା ପାଇଁ ଉପାୟ ଖୋଜିବ ।
ବିଦିତା=ବ୍ୟକ୍ତ ହୁଅନ୍ତି ।

ଠୂଳକର = ଠିକକର ।

ହେବୁ ପଥ = ଜ୍ଞାନର ମାର୍ଗକୁ ।

ସୂଧରେ = ବିଧି ଅନୁସାରେ ଧର

କୁମନ = ତେଜ

ବିମନ = ବାୟୁ

ସୁମନ = ଜଳ

ମନ = ପୃଥ୍ୱୀ

ଅମନ = ଆକାଶ ।

ସ୍ୱରୂପ = ଆପଣ ଦେଖିଆଡ଼େ ନ ଦେଇ । ଏକାଗ୍ର କର ବାମ ଅଙ୍ଗ = ବାଁ ପାଖ ରୋଧକଲେ ଦକ୍ଷିଣର ବାଟ ଖୋଲିବ ।

ଜୀବ ପରମକୁ = [illegible]ଥିକୁ

ମନ [illegible] ମନ ସ୍ଥିର କରି ତ୍ରିକୂଟରେ ରଖିବ ।

ଓଁ = [illegible] ଓଁକାର ରୂପ ଧ୍ୟାନ କର । ପରମ ପବନରେ [illegible] ପ୍ରାଣ ପବନ ସହିତ ମିଳିତ କରାଅ ।

ଅନାହତ ନାଦ = ଅବ୍ୟକ୍ତ ଶବ୍ଦ ଅନୁଭବ କରି ବାୟୁକୁ ଉପରକୁ ଉଠାଇବ ।

ବାଉଁଶ ମଣ୍ଡଳ = କପାଳ (କପାଳ ବାଉଁଶ ପାଠ ଶୋ ବ. ଗୀ)

ହେବୁ .. = ଜ୍ଞାନକୁ ପ୍ରବୁଦ୍ଧ ଚୈତନ୍ୟ ସହିତ ମିଳାଇ ମହାଶୂନ୍ୟରେ ଲୟ କରିବ ।

ମହାଶୂନ୍ୟ = ପବନର ଗତି ନାହିଁ ଏହା ସର୍ବଦା ନିର୍ବାତ ।

ଚରମ = ପ୍ରଶ୍ୱାସ ।

କଳ୍ପାନ୍ତୀ = କଳ୍ପ ପର୍ଯ୍ୟନ୍ତ ରହିବ ।



## ୩ୟ କଳ୍ପ ।

ଚନ୍ଦ୍ର ସୂର୍ଯ୍ୟରେ ... = ବାଆଁ ପୁଡ଼ା ବାୟୁକୁ ଚନ୍ଦ୍ର ଏବଂ ଡାହାଣ ପୁଡ଼ା ବାୟୁକୁ ସୂର୍ଯ୍ୟ କହନ୍ତି ।

ତ୍ରିକୂଟ ଦୁଆରୁ = ସୁଷୁମ୍ନାଦେଇ ବାୟୁ ବହେ । ଏହା ସେ ଦୁଇ ବାୟୁର ମଧ୍ୟସ୍ଥାନ ।

ଯେ ପାଦେ ··· = ସୁଷୁମ୍ନା ରନ୍ଧ୍ର ଦେଇ ବନ୍ଧ୍ରରେ ।

ଟେକନ୍ତା ଅର୍ଦ୍ଧ ପାଦ = ନିଶ୍ୱାସ = ଜୀବ ଉଲଟ ଭାବରେ ଉପରକୁ ବହୁଅଛି ।

ଚନ୍ଦ୍ରକାନ୍ତ = ବାମାଙ୍ଗ ଆଦ୍ୟ ।

ପରମ ପୁରୁଷ = ପ୍ରଶ୍ୱାସ ।

ଆହୁଟ = ସାଥ ।

ଭବକୁ = ସଂସାରକୁ

ଚନ୍ଦ୍ର ଅଙ୍ଗେ = ବାମାଙ୍ଗରେ ସ୍ଥିତ ।

ବାମ ଅଙ୍ଗରେ ·· = ବାଆଁରେ ନିଶ୍ୱାସ ବହିବା ବେଳେ ବାୟୁକୁ ଉପରକୁ ଟେକିବ ।

ମାନସସେବାର୍ଚ୍ଚନେ = ମାନସ ପୂଜା—ମନେ ମନେ ପୂଜା କରିବ ।

ଦକ୍ଷିଣ ଭଜନ = ସୂର୍ଯ୍ୟଙ୍କ ରୂପ ଦର୍ଶନ = ଡାହାଣ ପବନ ।

ପାଲଟିବ = ବାଆଁ ପୁଡ଼ାର ପବନ ଡାହାଣରେ ଫେରିବ ।

ଆଦ୍ୟମାତା = ଅର୍ଦ୍ଧ ମାତ୍ରା = ସୁଦର୍ଶନ ।

ଅକଟି = ସ୍ଥିର ।

ପଦନେ ·· = ପବନ ସ୍ଥିର ହୋଇଯିବ ।

ସୂର୍ଯ୍ୟ ଅଙ୍ଗରେ = ଡାହାଣ ପୁଡ଼ାର ବାୟୁ (ଦକ୍ଷିଣାବର୍ତ୍ତ ବାୟୁ)

ମାତାଙ୍କୁ = ଚନ୍ଦ୍ରକାନ୍ତ = ବାମ = ପରମ ।

ଶିଶୁଷବଦେ = ବନ୍ଧୁରେ ।

ଅରୁନ୍ଧତୀପ୍ରାଣ ନାହା = ବଶିଷ୍ଠ = ମନ ।

ସଗଗ = ସ୍ନେହଯୁକ୍ତ ।

ଦେହରୁ ଖାଙ୍କୋଳି = ଜ୍ଞାନକୁ ବାନ୍ଧ ।



# ୪ର୍ଥ କଳ୍ପ ।

ବିରାଟ ଶରୀରେ = ପିଣ୍ଡରେ ।
ଅମନ ଶିଖରେ = ବିନ୍ଦୁ ଉପରେ ଅଲେଖପୁର, ମହାଶୂନ୍ୟରେ ।
ନିର୍ବିକଳ୍ପ = ବିଷୟ ଶୂନ୍ୟ
ଅବନା = ଅବର୍ଣ୍ଣ ମଣ୍ଡଳ, ଅ ଅକ୍ଷରର ମଣ୍ଡଳ ବା ବର୍ଣ୍ଣଶୂନ୍ୟ
ଶଶାଙ୍କ .. = ଚନ୍ଦ୍ରପର କୋମଳ ରୂପ ।
ପରମ = ଆତ୍ମା
ସେ ଭୂତ... = ସେ ଆତ୍ମାଭୂତମାନଙ୍କର ମହାନ୍ ଈଶ୍ୱର ।
ଚନ୍ଦ୍ର ସୂର୍ଯ୍ୟରେ = ବାଁ ଡାହାଣରେ ଓ ମଧ୍ୟରେ (ସୁଷୁମ୍ନାରେ)
ପାଦରେ = ଅସ୍ଥାନରେ ।
ତନତନ୍ତ୍ରି = ହରେ ରାମ କୃଷ୍ଣ
ନିବୃତ୍ତି .. = ମହା ତେଜରେ ନିବୃତ୍ତି ହୋଇ (ପରିଣତ) ସିଦ୍ଧଅଛୁ ।
ଯେଉଁ ପାଦ = ସୁଷୁମ୍ନା ।
ପରମ ପୁରୁଷ = ଶବ୍ଦ ବ୍ରହ୍ମ । ହଂସ = ସୋଽହଂ ।
କଳ୍ପ = କଳ୍ପକାଳସ୍ଥାୟୀ ।
ଟେକନ୍ତା ପାଦ = ନିଶ୍ୱାସ
ଚନ୍ଦ୍ରକାନ୍ତିକ = ବାଁ ଅଙ୍ଗକୁ ପାଲଟାଇ ବସ ।
ସୂର୍ଯ୍ୟ ଅଙ୍ଗରେ = ଜ୍ୟୋତି ମଣ୍ଡଳରେ
ପାଞ୍ଚମନ = ଅମନ, ସୁମନ, କୁମନ, ବିମନ, ମନ ।
ବାହନ୍ତା ନଦୀ = ପ୍ରଶ୍ୱାସ
ତ୍ରିକୂଟେ = ତ୍ରିକୂଟକୁ ( ଏହି ତିନ ନାଡିର ମିଳନସ୍ଥାନକୁ )
ଉଦ୍ବୋଧ କର ।
କଣ୍ଠ ଘଟିକା = ଉପର ପାଟିର ରନ୍ଧ୍ରକୁ ।
ମେରୁ ଦ୍ୱାରରେ = ତ୍ରିକୂଟର ମେରୁଦ୍ୱାରରେ ସମ୍ବନ୍ଧ ଅଛୁ ।
ମୁଦ୍ରାପାଢ଼ = ବୋଧ କର
ସେ ନିର୍ଝର = ବାୟୁ

ବହ୍ମ = ଅଚ୍ୟୁତାନନ୍ଦଙ୍କ ମତରେ ପରମ ଉପରେ ବ୍ରହ୍ମ ।

ଭାରତ = କପାଳ, ପରମ ସାଧନ ଭୂଇଁ ।

ସିଷ ··ଦେଖା = ସୁଷୁମ୍ନା ସାମାନ୍ୟରେ ବୋଧ କରବ ଯେପରି ପୂର୍ଣ୍ଣ-ଭାବରେ ନ ହୁଏ ।

ଇଡ଼ା ପିଙ୍ଗଳାରେ କ୍ଷୀଣଭାବରେ ବାଇ ଚାଲିଥିବ—ତାକୁ ମଧ୍ୟ ସମସ୍ତରେ ରୋଧିବ ତହିଁ ଘଟିଥାଳ = ପରମ ଦେଖା ହେବ । ସେ ଅଟଲଖକୁ ଦେଖାଇବ ।

ଅନାମ ବୃକ୍ଷ = ଅବାୟୁ ମଣ୍ଡଳ

ବ୍ରହ୍ମରୁ ଧରମ ଜନ୍ମ ।

ସେ ହଂସ = ଜୀବ ପରମ ପ୍ରଶ୍ୱାସ ଓ ନିଶ୍ୱାସ ।

କୁଣ୍ଡଳୀ ଚକ୍ର = ଅର୍ଦ୍ଧମାତ୍ରା ।

ତିନ ତନ୍ତ୍ରୀ = ତ୍ରିବେଣୀ ।

ତହିଁ = ତ୍ରିକୂଟେ ।

ସକାଳେ = ପର ବ୍ରହ୍ମ ।

ମହାମାୟୀ = ଜ୍ୟୋତିର୍ମୂର୍ତ୍ତି — ଅର୍ଦ୍ଧମାତ୍ରା ।



## ୫ମ କଳ୍ପ ।

ଫୁଲ = ଅର୍ଦ୍ଧମାତ୍ରା, ଜ୍ୟୋତି

ଅନନ୍ତ = ସପ୍ତଫଣୀ — ୨ କର୍ଣ୍ଣ + ୨ ନାସା + ୨ ଚକ୍ଷୁ + ମୁଖ = ୭

ଚୋରକୁ = ପ୍ରଶ୍ୱାସ ପବନକୁ ।

ଦ୍ୱାର = ତ୍ରିକୂଟ ଉପରେ ମହାମାୟାଙ୍କ ସ୍ଥାନ ।

ବାଟିରୁ = ଦୋଷ ନ ଦେବୁ ।

ଅଭକ୍ଷ୍ୟ ଦ୍ରବ୍ୟ = ପ୍ରଶ୍ୱାସ ପବନ ।

ପରତେ··· = ଶରୀରର ସ୍ଥାନଯାକ ଚହ୍ଲିବା ଯାଏ = ଘଟ ଯୋଗ

ନଘାତ = ତ୍ରିକୂଟର ପାଖରେ ଗିରି କନ୍ଦରରେ ।

ଆହାର = ବାୟୁ ।

ସ୍ୱବୃତ୍ତି = ଜୀବନ ମୂଳତତ୍ତ୍ୱ = ବ୍ରହ୍ମ ।

ବିଳାପ = ଭାବନା ।

ପିଣ୍ଡକଳ୍ପ = ପିଣ୍ଡ ଦେହ ।

ବୃତ୍ତି = ବ୍ରହ୍ମତ୍ୱ ।

ନିଗମେ = ଅମନରେ

ଆହାର = ବାୟୁ = ବୃତ୍ତି ।

ହଂସ = ଜୀବ

ହଂସା = ନିଶ୍ୱାସ ଓ ପ୍ରଶ୍ୱାସ ।।

ନିର୍ଝର = ପ୍ରଶ୍ୱାସ ।

ତରୁଣି ମଣି = ଯୋଗମାୟା ।

ପଉଡ଼ଣ = ପୋଡ଼ଣ, ନାଶ କର ।

ଚନ୍ଦକୁ ··· = ବାଆଁରେ ବାୟୁ ବନ୍ଧିଲବେଳେ ଆରମ୍ଭ କରି
ପୁଣି ଦକ୍ଷିଣକୁ ଫେରାଇବ ।

ବାଇ = ପ୍ରଶ୍ୱାସ ।

ଦୟାଙ୍ଗ = ଲୟାଙ୍ଗ, ଅଙ୍ଗାଦିର ଜ୍ଞାନସବୁ ଲୀନ କର ।

ଅକ୍ଷରମାନଙ୍କୁ = ଯନ୍ତ୍ର ମନ୍ତ୍ରାଦିଙ୍କୁ ।

ଚନ୍ଦ୍ର ··· ନାଦ = ଚନ୍ଦ୍ରରେ ଆରମ୍ଭ କରି ସୂର୍ଯ୍ୟକୁ ଫେରାଇ
ପବନକୁ ଉପରକୁ ଠେଲିବ--ମନକୁ ନିଶ୍ଚଳ କରିବ । ତହିଁ
ନାଦ ଶୁଣି ପାରିବ ।

ଆଦିତ୍ୟ···ନାଶ = ସୂର୍ଯ୍ୟକୁ ଲେଉଟାଇଲେ — ତା ତେଜରେ
ଭୂତଜ୍ଞାନ ନାଶ ହେବ ।

ନାସା ··ଛନ୍ଦ = ନିଶ୍ୱାସ ଓ ପ୍ରଶ୍ୱାସ ରୋଧ କଲେ ।

ଅଗ୍ନି ପାଣିକି = ଚନ୍ଦ୍ର, ସୂର୍ଯ୍ୟକୁ ।

ପାଣି = ଚନ୍ଦ୍ର — ବାଆଁର ପବନ ।

ସବେଦବକ = ନିକୂଟରେ ।

ସ୍ମେର = କାଳ ।

ପଶ୍ଚିମ ··ନାବ = ପବନକୁ ପଛଇ ପଛେଇ ନେଇ ।
ଘାଇ ବୋହୁକୁ = ପ୍ରଶ୍ୱାସକୁ ।
ଜେଠାଶୁର = ମନ ।
ଢେଣାରୁ ··ନାଶ = ପ୍ରଶ୍ୱାସ ରୋଧ କରି ।
ଭ୍ରମର = ମନ ।
କମଳରେ = ବ୍ରହ୍ମରନ୍ଧ୍ରରେ ।
ଦୁଇ = ଜୀବ ପରମ = ନିଶ୍ୱାସ ଓ ପ୍ରଶ୍ୱାସ ।
ଅଦେଖାଭୂଇଁ = ଅମନ ପୁର, ମହାକାଶ ।



## ୬ଷ୍ଠ କଳ୍ପ ।

ହେବୁ ମେଳା = ମିଶିବୁ ।
ନିଷ୍ପତ୍ତି ଯୋଗ = ସମାଧିର ପର ଅବସ୍ଥା ।
ନିର୍ଧୂମ ଅଗ୍ନି = ଜ୍ୟୋତିରୂପ ।
ଶିଖେ = ତ୍ରିକୂଟ ଉପରେ ।
ତ୍ରିଗୁଣ = ସତ୍ତ୍ୱ, ରଜ, ତମ ।
ହାଦେ = ନିଷ୍ଟମ୍ଭ ।
ନମ୍ବୃନ··· = ବାହ୍ୟ ପଦାର୍ଥ ଗୋଚର ହେବ ନାହିଁ ସମାଧି ଅବସ୍ଥା ।
ଅସାଧନେ = ବାୟୁ ।
ବାମାଙ୍ଗେ··· = ବାମଦ୍ୱାର ବନ୍ଦ କରି ।
ମେରୁପଥରେ = ତ୍ରିକୂଟରେ ।
ଶିଳା = ଶାଳଗ୍ରାମ ଶିଳା ।
ଶୋରଜା = ଖାଉର ।
ଉଦୟ··· = ଡାହାଣ ବାୟୁ ଉଦୟରୁ ଶେଷ ପର୍ଯ୍ୟନ୍ତ ।
ରବିରେ··· ସାଙ୍ଗ = ଚନ୍ଦ୍ର (ବାଆଁ ପବନକୁ) ନେଇ ସୂର୍ଯ୍ୟାହୁଣ
(ଡାହାଣ ପବନ) କରିବ ।
କାଳବଳ = ଚଳକ, ମୃତ୍ୟୁ ।

ଚନ୍ଦ୍ର ସୂର୍ଯ୍ୟ = ଡାହାଣ ବାମ ବାୟୁକୁ ଏକ କଲେ ।
ଉଜାଣି = ଉପରକୁ ଉଠାଇବାକୁ ।
ପାଣି = ପବନ ।
ଖେପିବ = ଠେଲିବ ।
ଶିଖେ = ତ୍ରିକୂଟ ଉପରେ ।
ଅଦ୍ଧମୂଳ = ଶବ୍ଦବ୍ରହ୍ମ ।
ତାର ନ ଦିଶୁଛି = ଜଣା ନ ଯାଉଛି ।
ବାସନା ବାର = କର୍ମ୍ମ ବାସନା ତ୍ୟାଗ କର ।
ହେତୁ = ଜ୍ଞାନରେ ହୋମ କରିବ = ଜ୍ଞାନ ଅବଲମ୍ବନ କରିବ,
ମନ୍ତ୍ରାଙ୍ଗେ = ମନରେ ନ ମିଳାଇ ।
ନିଜବୃତ୍ତି = ବ୍ରହ୍ମତ୍ତ୍ୱ ।
ନିଷ୍ଠା = ନିଷ୍ଠସ୍ଥ ।
ଥାଇ··· = ମିଶି ନ ମିଶିଲା ହୋଇ = ଅନାସକ୍ତ ଭାବରେ କାର୍ଯ୍ୟରେ ପ୍ରବର୍ତ୍ତି ।
ପରମ ରସ = ପ୍ରଶ୍ୱାସ ।
କଳ୍ପ ବିଭୂତି = କଳ୍ପକାଳ ରହିବାର ଔଷଧ ।
ତ୍ରିଗୁଣ = ତ୍ରିକଟୁ, ତ୍ରିଫଳା ।
ହାଡ଼ କେଶର = ପଦ୍ମ କେଶର ।
ଲାଗି = ମିଳାଇ ।
ରିଷିଫଳ = ହରିଡ଼ା ।
ଈଶାନେ = ଶିବ ।
ହେମ = ମୃତ୍ୟୁ. କାଳ
ଝର = ପବନ ।



## ୮ମ ବେଳ୍ପ

ପଞ୍ଚାଶ ଦଳ=ଲଲାଟଚକ୍ରର ତଳଦେଶ ।
ଜଳ = ଚନ୍ଦ୍ରମଣ୍ଡଳକୁ ବାୟୁ = ବାଆ ପାଖରୁ ।
ସୂର୍ଯ୍ୟ ମଣ୍ଡଳେ = ଡାହାଣ ପାଖରେ ।
ନଶ୍ରେଣୀ = ସାଧନମାର୍ଗର ପଥ ।
ବାମ···ଦେବ = ବାମ ଓ ଡାହାଣ ପବନକୁ ଏକ କରିବ ।
ଡମ୍ବରୁ = ନାସିକାର ଅ◌ନତ ସ୍ଥାନ ।
ଗୁହ୍ୟ = ଗୁଦ
ଇନ୍ଦ୍ର ଚକ୍ର = ଲିଙ୍ଗ ଚକ୍ର ।
ଗିରି = ତ୍ରିକୂଟ ।
ସରସ୍ୱତୀ = ତ୍ରିଷ୍ଟୁନା ନାଡ଼ିରେ ।
ଏଠି ଛଅଚକ୍ର ଓ ତହିଁର ପବନ ଓ ଦେବତା କଥାଲୁ ॥
ଏ ଛଅଚକ୍ରରେ ଅଣଗୁଣ ପବନ ଅଛି ।
ମନୁନ୍ଦ୍ର ପୁର — ମନର ଭୁବନ; ବୈତନ୍ଦ୍ର ଗୀତା ୩ୟ ଅଧ୍ୟାୟ ଦ୍ରଷ୍ଟବ୍ୟ ।
କାହିଁଣୀ ମଣ୍ଡଳ = କପାଳ, ନାଦ ମଣ୍ଡଳ, ଅର୍ଦ୍ଧମାତ୍ରା ।
ଉଲଟ = ପ୍ରଶ୍ୱାସ ବାୟୁ



## ୯ମ କଳ୍ପ ।

ଆତ୍ମା = ପ୍ରଶ୍ୱାସ ପବନ ।
ବିଷମ ଅର୍ଗଳ = ବ୍ରହ୍ମରନ୍ଧ୍ର ।
ଶଯ୍ୟାରେ = ସଂସାରରେ ।
ଏକପାଦ — ଆତ୍ମା, ହଂସ = ପ୍ରଶ୍ୱାସ ବାୟୁ
ବନା ··ବନାଇ = ପ୍ରଶ୍ୱାସ ବାୟୁକୁ ଉପରକୁ ନ ଟେକ ।
ଉଲଟ = ପ୍ରଶ୍ୱାସ ପବନ ।
ହେତୁରେ, = ଜ୍ଞାନରେ, ଚୈତନ୍ୟରେ ।



## ୧୦ମ କଳ୍ପ

### ୧ମରେ ମାତୃଗର୍ଭ ବର୍ଣ୍ଣନା ।

ବନ୍ଧୁ = ସାର୍ଯ୍ୟ
ଚନ୍ଦ୍ରସୂର୍ଯ୍ୟ ଦ୍ୱାରେ = ସ୍ତ୍ରୀର ବାମ ପୁଡ଼ାରେ ଏବଂ ପୁରୁଷର ଡାହାଣ ପୁଡ଼ାରେ ବାୟୁ ଯିବାବେଳେ ଗର୍ଭ ସଞ୍ଚାର ହୁଏ ।
"ଋତ୍ୟାରମ୍ଭେ ରବିଃ ପୁଂସଃ ସ୍ତ୍ରୀଣାଂ ଚୈବ ସୁଧାକରଃ ।
ଉଭୟୋଃ ସଙ୍ଗମେ ପ୍ରାପ୍ତେ ବନ୍ଧ୍ୟା ପୁତ୍ରମବାପ୍ନୁୟାତ୍ ।"
ଢାର = ଆମ୍ଭାର ।
ସୁସଂଗୀତ = ଯୁକ୍ତ ।
ମେରୁ = ତ୍ରିକୂଟ ।
ପ୍ରଣବଦ୍ୱାରେ = ମାତୃଗର୍ଭରେ
ସୁମନ ପରମର ଡ଼ୋର କୌପୁନୀ ଅଛେ ।
ପ୍ରକୃତ···ପ୍ରକୃତ ( ମାୟା ) ବଳରୁ ଏକ ବୋଲି ଜ୍ଞାନହୁଏ ନାହିଁ
ଜାତକୃତବଧି = ଜନ୍ମକର୍ମ ବିଷୟ ।
ଚନ୍ଦ୍ରାର୍କ କାନ୍ତ = ବାଆଁ ଡ଼ାହାଣର ବାୟୁକୁ ॥



## ୧୧ଶ କଳ୍ପ

ଧାପ = ତେଜ, ସ୍ଥାନ
ଗଳି ପଡ଼ିଲ = କ୍ଷୟ ହୁଏ ।
ଏ···ଶୋଧି = ଏହି ନବଦ୍ୱାରୁ ନେଇ ମନ ବୁଦ୍ଧିକୁ ତାଳୁକାକୁ ଗୃହ୍ଲିଲେ ।
ଦବାନଶି = ବାମ ଓ ାହାଣର ବାୟୁକୁ ।
ତ୍ରିଗୁଣ = ସତ୍ତ୍ୱରଜତମ ବା ଇଡ଼ା ପିଙ୍ଗଳା ସୁଷୁମ୍ନାକୁ ଏକକର
ସୂତ୍ରେ = ବାଟରେ ।
ବୈର = କାଳ ମାୟା ।

ତାକୁ = ପବନକୁ ।
ବହନ୍ତା = ପ୍ରଶ୍ୱାସକୁ ।
ଅମନ ଶିଖ = ଅବାଇ ମଣ୍ଡଳ, ମହାଶୂନ୍ୟ ।
ବଙ୍କନାଳରେ = ନାସିକାରେ
ତତୁ = ତତ୍ତ୍ୱ ।
ତ୍ରିଗୁଣ ସୂତ୍ର = ସତ୍ତ୍ୱରଜ ଓ ତମର ବନ୍ଧନ ।
ଅରେହ = ଅରେଖ = ଅଲେଖ ବ୍ରହ୍ମ ।
ରଜ · = ସ୍ତ୍ରୀମାନେ ରଜଗୁଣ ପ୍ରଧାନ ।
ତମ ଓ ରଜଗୁଣ ପ୍ରାଣିଙ୍କର ଉପଯୁକ୍ତ ଧର୍ମ ନୁହେଁ ।
ସାତୁକ୍ୟମସ୍ତ = ସତ୍ତ୍ୱଗୁଣ ପ୍ରଧାନ ।
ଅଖଣ୍ଡ = ପୂର୍ଣ୍ଣ ବ୍ରହ୍ମକୁ ।
ଅନ୍ତେ = ଭିତରେ
ବାରକୁ ବାର ·· = ୧୨ ଆଙ୍ଗୁଳ ନିଶ୍ୱାସ + ୧୨ ବାରଆଙ୍ଗୁଳ ପ୍ରଶ୍ୱାସ ମୋଟରେ ୨୪ ଆଙ୍ଗୁଳ ।



୧୨ଶ କଳ୍ପ ।

ଇନ୍ଦ୍ରିୟ··· କର = ଇନ୍ଦ୍ରିୟଙ୍କୁ ସନ୍ତୋଷ ନକର = ସଂଯମକର
ବତିଶ କଳା = ଚନ୍ଦ୍ର ୧୬ କଳା + ସୂର୍ଯ୍ୟ ୧୨ + ଊର୍ମ୍ମି + ଧୂର୍ମ୍ମି, ଜ୍ୟୋତ + ଜ୍ୱାଳା = ୩୨ ।
ବହନ୍ତା = ପ୍ରଶ୍ୱାସ ପବନ ।
ଉଜାଣି · = ଜୋରରେ ପବନ ଉପରକୁ ··· ଲବୁ ··· ।
କଳ୍ପ = କଳ୍ପକାଳ ବଞ୍ଚିବାପାଇଁ ଔଷଧ ବିଶେଷ ।
ଧୂର୍ମ୍ମି = ନାସିକାର ଜଳ ।
ଶରି = ଶରୀର ।



# ଅଣାକାର ସଂହିତା ।

ନାମବ୍ରହ୍ମ = ଜ୍ୟୋତିଃ = ରୂପ ।
ନାମ = ରୂପବାଚକ ଶବ୍ଦ ।
ଅନାମ = ଅଣଯର = ଅଣାକାର ବ୍ରହ୍ମ
ନାମତତ୍ତ୍ୱ = ନାମର ମୂଳ କାରଣ ।
ତହିଁପରକୁ = ତାହାର ଉପରକୁ ।
ବରୁଣ ଆଳରେ = ସମୁଦ୍ରରେ ।
ଅନାମିକାକୁ ଟି = ନାମଶୂନ୍ୟକୁ = ଅଣାକାରକୁ
ନାମ = ବ୍ରହ୍ମ = ଜ୍ୟୋତବ୍ରହ୍ମ
ଅରୂପାନନ୍ଦର = ଅଣାକାର ଏବଂ ଆନନ୍ଦମୟଙ୍କୁ ।
ଅନାମ = ଶବ୍ଦବ୍ରହ୍ମ ।
କହ୍ନା = କୃଷ୍ଣ ।
ପଦ୍ମବନରେ = ଲେମ୍ବାଳରେ ।
ମୂର୍ଖ ହୋଇଛୁ = ଶାସ୍ତ୍ରର ଜ୍ଞାନ ନାହିଁ ।
ଆରମ୍ଭେ = ପ୍ରାରବ୍ଧ କର୍ମ ଯୋଗୁଁ ।
ବେଦର ଅନ୍ତ = ଉପନିଷଦ୍ ଯାକ ।
ପରତେ = ପ୍ରତ୍ୟକ୍ଷ ହେଲେ ।
ଜଞ୍ଜାଳ ଦୋରେଣ୍ଡା = ଦୁଃଖ ଭୋଗୀ ।
ତମ = ଅଜ୍ଞାନାନ୍ଧକାର ।
ସାମବେଦ = ନାସିକା ।
ଯଜୁର୍ବେଦ = ମୁଖ
ଋ = ଚକ୍ଷୁ
ସ୍ତୁ = କଣ୍ଠ ।
ଓଝା = ଉପାଧ୍ୟାୟ, ଗୁରୁ
ତନମନ = ତନ୍ମନ ହୋଇ
ଦାଇବୁ ॥କାଟିବୁ ।

୧ମ ରେ - ଶବ୍ଦବ୍ରହ୍ମ ବନ୍ଦୁରୂପରେ ପ୍ରକାଶିତ । ଅଣାକାର ମନ୍ତ୍ରର ବଖାଣ ଏଠାରେ ବର୍ଣ୍ଣିତ ଅଛି—ଗୁରୁଠାରୁ ତାହା ଜାଣିବ ।

ଗ୍ରସ୍ଥା ଅବ ଡ଼ ଜ୍ୟୋତ—ସାଧନାର ତକୋଟି ଅବସ୍ଥା
ଶୁ, ସ ୬ ଅଧ୍ୟାୟ ଓ ଗ୍ରସ୍ଥାଜ୍ୟୋତ ଅବାତ ଅଛି ଦେଖ ।

# ପ୍ରାଚୀ ଗ୍ରନ୍ଥମାଳା

| | | |
|---|---|---|
| ୧ । | ଛନ୍ଦସ୍ଥଚିନ୍ତାମଣି (୧ମ ଭାଗ) | ମୂଲ୍ୟ ଟ ୧ ୯ |
| ୨ । | ରହସ୍ୟମଞ୍ଜରୀ | ମୂଲ୍ୟ ଟ ୦ ୴ |
| ୩ । | ସ୍ତୁତିଚିନ୍ତାମଣି | ମୂଲ୍ୟ ଟ ୦ ୴ |
| ୪ । | ବ୍ରହ୍ମନିରୂପଣ ଗୀତା | ମୂଲ୍ୟ ଟ ୦ ୴ |
| ୫ । | ଭୀମଭୋଇଙ୍କ ଭଜନମାଳା (୧ମ ଶତକ) | ମୂଲ୍ୟ ଟ ୭ ।୶ |
| ୬ । | ,, (୨ୟ ଶତକ) | ମୂଲ୍ୟ ଟ ୦ । |
| ୭ । | ବ୍ରହ୍ମଶାଙ୍କୋଳ ଓ ଅଙ୍କାକାର ସଂହିତା | ମୂଲ୍ୟ ଟ ୦ ୵ |
| ୮ । | ନିର୍ଗୁଣ ମାହାତ୍ମ୍ୟ | ମୂଲ୍ୟ ଟ ୦ ୴ |
| ୯ । | ରସକଲ୍ଲୋଳ | ମୂଲ୍ୟ ଟ ୧ ୵ |
| ୧୦ । | ପୂର୍ଣ୍ଣତମଚନ୍ଦ୍ରୋଦୟ | ମୂଲ୍ୟ ଟ ୦ ୵ |
| ୧୧ । | ବୃନ୍ଦାବନଧାମପୁରାଣ | ମୂଲ୍ୟ ଟ ୧ ୵ |
| ୧୨ । | ବିଷ୍ଣୁଗର୍ଭପୁରାଣ | ମୂଲ୍ୟ ଟ ୧ ୵ |
| ୧୩ । | ପ୍ରେମପଞ୍ଚାମୃତ | ମୂଲ୍ୟ ଟ ୦ ୴ |
| ୧୪ । | ମଥୁରାମଙ୍ଗଳ | ମୂଲ୍ୟ ଟ ୧ । |
| ୧୫ । | ପରଚେ ଗୀତା | ମୂଲ୍ୟ ଟ ୦ ୵ |
| ୧୬ । | ଶିବ ସ୍ୱରୋଦୟ | ମୂଲ୍ୟ ଟ ୦ । |
| ୧୭ । | ପ୍ରେମଭକ୍ତି ବ୍ରହ୍ମଗୀତା | ମୂଲ୍ୟ ଟ ୦ । |
| ୧୮ । | ଗୁରୁଭକ୍ତି ଗୀତା (୧ମ ଖଣ୍ଡ) | ମୂଲ୍ୟ ଟ ୧ ୵ |
| ୧୯ । | ,, (୨ୟ ଖଣ୍ଡ) | ମୂଲ୍ୟ ଟ ୦ ୵ |
| ୨୦ । | ରସବାରିଧି | ମୂଲ୍ୟ ଟ ୦ ୵ |
| ୨୧ । | ଊଷାଭିଳାଷ | ମୂଲ୍ୟ ଟ ୦ ୵ |

୨୨ । ନଳଚରିତ — ମୂଲ୍ୟ ଟ ୦ ।୵
୨୩ । ଶଶିସେଣା — ମୂଲ୍ୟ ଟ ୦ ୳
୨୪ । ଗୋପୀଭାଷା — ମୂଲ୍ୟ ଟ ୧(
୨୫ । ରୁକ୍ମିଣୀ ବିଭା — ମୂଲ୍ୟ ଟ ୦ ୳
୨୬ । ବଟଅବକାଶ — ମୂଲ୍ୟ ଟ ୦ ।
୨୭ । ଜୟକୃଷ୍ଣ ଭଜନ — ମୂଲ୍ୟ ଟ ୦ ୳
୨୮ । ମହିମାଧର୍ମ ପ୍ରତିପାଦକ — ମୂଲ୍ୟ ଟ ୨(
୨୯ । ଚୌତିଶା ମଧୁଚକ୍ର (୧ମ ଖଣ୍ଡ) — ମୂଲ୍ୟ ଟ ୦ ୳
୩୦ । ,, (୨ୟ ଖଣ୍ଡ) — ମୂଲ୍ୟ ଟ ୦ ୳
୩୧ । ,, (୩ୟ ଖଣ୍ଡ) — ମୂଲ୍ୟ ଟ ୦ ୳
୩୨ । ,, (୪ର୍ଥ ଖଣ୍ଡ — ମୂଲ୍ୟ ଟ ୦ ୳
୩୩ । ରାମବିଭା — ମୂଲ୍ୟ ଟ ୦ ।
୩୪ । ଶ୍ରୀ ଉଦ୍ଧବବୋଧ ଗୀତା — ମୂଲ୍ୟ ଟ ୦ ।
୩୫ । ଜଗମୋହନ ଛାନ୍ଦ — ମୂଲ୍ୟ ଟ ୦ ୳
୩୬ । ସାଧୁଗୀତ — ମୂଲ୍ୟ ଟ ୦ ।
୩୭ । ଖାଡ଼ିଙ୍ଗା ଭାଗବତ (୧୧ଶ ସ୍କନ୍ଧ) — ମୂଲ୍ୟ ଟ ୦ ୳
୩୮ । ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ — ମୂଲ୍ୟ ଟ ୧୳

ପ୍ରାପ୍ତିସ୍ଥାନ — **ପ୍ରାଚୀ ବୁକ୍‌ଷ୍ଟଲ୍**
ପୋ: ଅ: ଚାନ୍ଦନୀଚୌକ
**କଟକ**

# ପ୍ରାଚୀ ସମିତିର ମୁଖପତ୍ର

ଦେଶ ବିଦେଶରେ ସୁପରିଚିତ

# ପ୍ରାଚୀ

**ଇଂରାଜୀ ତ୍ରୈମାସିକ ସାହିତ୍ୟ ଓ**
**ପ୍ରତ୍ନତତ୍ତ୍ୱ ପତ୍ରିକା**

ପ୍ରତ୍ୟେକ ଉତ୍କଳୀୟ ଛାତ୍ରର ଅବଶ୍ୟ ପଠନୀୟ

ବାର୍ଷିକ ମୂଲ୍ୟ ଟ ୩୯ ପ୍ରତି ସଂଖ୍ୟାର ମୂଲ୍ୟ ଟ ୧୯

ପ୍ରାପ୍ତିସ୍ଥାନ :—
ସମ୍ପାଦକ, ପ୍ରାଚୀସମିତି
ପୋ: ଅ: ଚାନ୍ଦନୀଚୌକ
କଟକ

## ପ୍ରାଚୀ ସମିତିର ଅପୂର୍ବ ଆବିଷ୍କାର

**କାବ୍ୟ ମୁକୁଟମଣି**

**ବାଙ୍କୀରାଜା ୬ ପଦ୍ମନାଭ ଶ୍ରୀଚନ୍ଦନ କୃତ**



ଉପେନ୍ଦ୍ରଭଞ୍ଜଙ୍କ 'ଲାବଣ୍ୟବତୀ' ପର ପ୍ରତ୍ୟେକ ଯୁବା ଯୁବତୀ ସାହିତ୍ୟଭକ୍ତ ଓ ରସିକଙ୍କ କଣ୍ଠହାର ହେବ । ବିଶଦ ଟୀକା ଓ ମୁଖବନ୍ଧ ସହ ସମ୍ପାଦିତ ଓ ପଶପାଠୀସହ ମୁଦ୍ରିତ । ସୁଲଭମୂଲ୍ୟ ଏକଟଙ୍କା ମାତ୍ର । ଯେଉଁମାନେ ଶୀଘ୍ର କିଣିବାକୁ ଅର୍ଡର ପଠାଇବେ ସେମାନେ ଉପଯୁକ୍ତ କମିସନରେ ବହି ଅସମ୍ଭବ ଶସ୍ତା ଦାମ୍‌ରେ ପାଇ ପାରିବେ ।

ପ୍ରାଚୀ ସମିତି ଆବିଷ୍କାରର ବୃତ୍ତାନ୍ତ

କ

**ସାହିତ୍ୟ ମଣିରତ୍ନ ମଞ୍ଜୁଷା**

# ଚଉତିଶା-ମଧୁଚକ୍ର

ରେ

ରସିକ ଭକ୍ତ ଭାବୁକ ପ୍ରେମିକ ସମସ୍ତଙ୍କ କଣ୍ଠହାର ଶତ ଶତ ଅପ୍ରକାଶିତ ଚଉତିଶା ଗ୍ରନ୍ଥକୀଟ [illegible]ଙ୍କ ମୁଖରୁ ଉଦ୍ଧାର ହୋଇ ପ୍ରକାଶିତ ହେଉଅଛି । ଏହି ଚଉତିଶା ମଧୁଚକ୍ରରୂପ ଦର୍ପଣରେ ଉତ୍କଳର ଗୌରବାବହ ଅତୀତର କମଳମୁଖ ଦେଖି ଆଜ ଆନନ୍ଦରେ ପ୍ରତ୍ୟେକ ସ୍ୱଦେଶପ୍ରେମିକର ଛାତି ଫୁଲି ଉଠୁଅଛି । ୧ମ ୨ୟ ୩ୟ ଓ ୪ର୍ଥ ଏହି ଚାରିଖଣ୍ଡ ପ୍ରକାଶିତ ହେଲା । ପଛେ ଅନ୍ୟାନ୍ୟ ଖଣ୍ଡମାନ ବାହାରୁଅଛି ।

**ପ୍ରତି ଖଣ୍ଡର ମୂଲ୍ୟ ଟ ୦ ୫**

ପୁସ୍ତକଖଣ୍ଡିମାନ ଆମୂଳଚୂଳ କମନୀୟ ପରିପାଟୀରେ ମୁଦ୍ରିତ—

ପ୍ରାପ୍ତିସ୍ଥାନ

**ପ୍ରାଚୀ ବୁକ୍ ଷ୍ଟଲ୍**

ପୋ: ଅ: ଚାନ୍ଦନୀଚୌକ, କଟକ ।

ମହାପୁରୁଷ ଅଚ୍ୟୁତାନନ୍ଦ ଗୋସ୍ୱାମୀଙ୍କ କୃତ

# ବ୍ରହ୍ମାଙ୍କୁଳି

ଓ

## ଅଣାକାର ସଂହିତା

ଓ ମୁଖବନ୍ଧରେ

**ମହାପୁରୁଷଙ୍କ ସୁବିସ୍ତୃତ ଚରିତ ।**

---

ରେଭେନ୍ସା କଲେଜର ଅଧ୍ୟାପକ

**ରାୟ ସାହେବ ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି ଏମ୍.ଏ.ଙ୍କ**

**ଦ୍ୱାରା**

ସୁବିସ୍ତୃତ ଟୀକାସହ ସଙ୍କଳିତ

ଦ୍ୱିତୀୟ ମୁଦ୍ରଣ

୧୯୩୩

ମୂଲ୍ୟ ଟ ୦ ୫ ମାତ୍ର

